# ପାଠାଲୋଚନାର ଭୂମିକା


ଲେଖକ :

**ଡଃ. ପୂର୍ଣ୍ଣଚନ୍ଦ୍ର ମିଶ୍ର**

ଅଧ୍ୟାପକ,

ଓଡ଼ିଆ ବିଭାଗ,

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,

ବ୍ରହ୍ମପୁର-୭୬୦୦୦୭ (ଗଞ୍ଜାମ)



ପ୍ରକାଶିକା :

**ଶ୍ରୀମତୀ ଜୟନ୍ତୀ ମିଶ୍ର**

ବିଶ୍ୱନାଥପୁର,

ପୁରୀ-୭୫୨୦୧୪

ପ୍ରଥମ ସଂସ୍କରଣ :

ବସନ୍ତ ପଞ୍ଚମୀ, ୧୯୯୦

ମୁଦ୍ରଣ :

ରେଡ଼ିଏଣ୍ଟ ପ୍ରୋସେସ୍

ଉତ୍କଳ ଆଶ୍ରମ ରୋଡ୍

ବ୍ରହ୍ମପୁର-୭୬୦୦୦୧ (ଗଞ୍ଜାମ)

ମୂଲ୍ୟ : **ଟ ୧୮.୦୦**

**(ଅଠର ଟଙ୍କା ମାତ୍ର)**


**PATHALOCHANARA BHUMIKA**

(An introduction to Textual Criticism)


*Written by* :

**Dr. Purna Chandr Mishra**

Lecturer in Oriya,

Berhampur University,

Berhampur-760007 (Gm.)



*Published by* :

**Smt. Jayanti Mishra**

Biswanathpur

Puri-752014

*First Edition* :

Basantapanchami, 1990

*Printed at* :

Radiant Process,

Utkal Ashram Road,

Berhampur-760001 (Gm.)

Price : **Rs. 18.00**

**(Rupees Eighteen Only)**

# ମୋ ତରଫରୁ ପଦେ ଅଧେ...

ନବ୍ୟଭାରତୀୟ ଭାଷା ମଧ୍ୟରେ ଓଡ଼ିଆ ଭାଷାକୁ ଜ୍ୟେଷ୍ଠାଭଗିନୀ ରୂପେ ଡଃ ସୁନୀତି କୁମାର ଚଟ୍ଟାର୍ଜୀଙ୍କ ମତବ୍ୟକ୍ତ କରିଛନ୍ତି । ଏହି ଭାଷା କେବଳ ଜ୍ୟେଷ୍ଠାଭଗିନୀ ନୁହେଁ ସମୃଦ୍ଧଶାଳୀ ମଧ୍ୟ । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏ ଭାଷାର ବିଶେଷ ଗ୍ରନ୍ଥ ଲୋକଲୋଚନକୁ ଆସିପାରି ନଥିବାରୁ କେତେକ ଓଡ଼ିଆ ଭାଷାକୁ ସ୍ୱୀକୃତି ଦେବା ନିମନ୍ତେ କୁଣ୍ଠା ପ୍ରକାଶ କରିବା ସଙ୍ଗେ ସଙ୍ଗେ ବଙ୍ଗ ଭାଷାର ଏକ ଉପଭାଷା ରୂପେ ଯୁକ୍ତି ବାଢ଼ିଥିଲେ । ୧୮୭୦ ମସିହାରେ ବୀମସ୍ ସାହେବ ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଭାଷାରୂପେ ପ୍ରମାଣିତ କରିବା ସଙ୍ଗେ ସଙ୍ଗେ ଏହାକୁ ଲୋକଙ୍କ ପାଖରେ ପରିଚିତ କରାଇବା ପାଇଁ ଉଦ୍ୟମ କରିଥିଲେ । ୧୮୭୦ ମସିହା ବେଳକୁ ଅଳ୍ପ କେତୋଟି ଓଡ଼ିଆ କାବ୍ୟ କବିତା ଗ୍ରନ୍ଥ, କୃଷ୍ଣସିଂହ ମହାଭାରତ, ବଙ୍ଗଳାରୁ ଅନୁଦିତ କେତେକ ପୁସ୍ତକ ତଥା ଧର୍ମ ପ୍ରଚାର ନିମନ୍ତେ ମିସନାରୀଙ୍କ ଦ୍ୱାରା କେତେକ ଗ୍ରନ୍ଥ ଓଡ଼ିଆରେ ମୁଦ୍ରିତ ହୋଇଥିଲା । ଏ ସମସ୍ତ ଗ୍ରନ୍ଥରୁ ଓଡ଼ିଆଭାଷା ଓ ସାହିତ୍ୟ ସମ୍ପର୍କରେ ମୂଲ୍ୟାଙ୍କ ଶନଟିଏ ପାଇବା କଷ୍ଟକର ଥିଲା । ଫଳରେ ତାଳପତ୍ର ପୋଥି ଆକାରରେ ଥିବା ଓଡ଼ିଆ ସାହିତ୍ୟର କେତେକ କାବ୍ୟ କବିତାକୁ ଉଦ୍ଧାର କରି ତାକୁ ମୁଦ୍ରିତ ରୂପ ଦେବାପାଇଁ ଯେଉଁ ପ୍ରାରମ୍ଭିକ ଉଦ୍ୟମ ହୋଇଥିଲା, ତାହା ପରବର୍ତ୍ତୀ ସମୟରେ ବହୁ ବ୍ୟକ୍ତିବିଶେଷ ତଥା ଅନୁଷ୍ଠାନକୁ ପାଣ୍ଡୁଲିପି ସମ୍ପାଦନା ନିମନ୍ତେ ଉତ୍ସାହ ପ୍ରଦାନ କଲା ।

ପାଣ୍ଡୁଲିପି ସମ୍ପାଦନା ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ଏମ୍. ଏ. ଶ୍ରେଣୀରେ କେତେବର୍ଷ ପାଇଁ ସ୍ୱତନ୍ତ୍ର ପତ୍ରରୂପେ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇଥିଲା । ତା'ପରେ ବିଭିନ୍ନ ସ୍ଥାନରେ ଓଡ଼ିଆ ଏମ୍. ଫିଲ୍. ପାଠ୍ୟକ୍ରମରେ ମଧ୍ୟ ଏ ସମ୍ପର୍କରେ ଅଧ୍ୟୟନ କରିବାର ସୁଯୋଗ ଦିଆଗଲା । ଏହି ବିଷୟଟିକୁ

ବୁଝିବା ନିମନ୍ତେ ଓଡ଼ିଆରେ କୌଣସି ବହି ନଥିବାରୁ ପିଲମାନେ *An Introduction to Textual Criticism* ବହିଟିକୁ ଗ୍ରହଣ କରିବାକୁ ବାଧ୍ୟ ହେଉଥିଲେ । ଏହି ଅସୁବିଧାଟିକୁ ଅନୁଭବ କରି ଓଡ଼ିଆରେ ଗୋଟିଏ ଗ୍ରନ୍ଥ ଲେଖିବା ନିମନ୍ତେ ଆଗ୍ରହୀ ହୋଇ ବିଭିନ୍ନ ଭାଷାରେ ଥିବା ଏ ସମ୍ପର୍କିତ ଗ୍ରନ୍ଥକୁ ସଂଗ୍ରହ କରି ଅନୁଧ୍ୟାନ କଲି ।

ଅନୁଧ୍ୟାନ ପରେ ଗ୍ରନ୍ଥଟିର ପୂର୍ଣ୍ଣାଙ୍ଗ ରୂପ ପ୍ରଦାନ ନିମନ୍ତେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଫେସର ଡଃ ଦାଶରଥି ଦାସ, ଡଃ ସୁଦର୍ଶନ ଆଚାର୍ଯ୍ୟ ଆଦି ଗୁରୁଜନ ତଥା ବନ୍ଧୁମାନେ ବିଶେଷ ଉତ୍ସାହ ପ୍ରଦାନ କରିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି । ଏହି ଗ୍ରନ୍ଥଟିର ଅଙ୍କୁରୋଦ୍‌ଗମଠାରୁ ମୁଦ୍ରଣପର୍ଯ୍ୟନ୍ତ ପର୍ଯ୍ୟନ୍ତ ପ୍ରତ୍ୟେକ ସୋପାନରେ ସତ୍ପରାମର୍ଶ ଉପଦେଶ ପ୍ରଦାନ ସହିତ ଗୋଟିଏ ବଳିଷ୍ଠ ଭୂମିକା ଲେଖି ଗ୍ରନ୍ଥକୁ ସମୀକ୍ଷା କରିଥିବାରୁ ମୋର ଶିକ୍ଷାଗୁରୁ ଡଃ କୃଷ୍ଣଚରଣ ସାହୁଙ୍କ ପାଖରେ ମୁଁ ଚିରକୃତଜ୍ଞ ।

ଯେଉଁ ଶୁଭେଚ୍ଛୁ ତଥା ବନ୍ଧୁମାନେ ଏ ଗ୍ରନ୍ଥଟିର ମୁଦ୍ରିତ ରୂପ ଦେଖିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ ଓ ଗ୍ରନ୍ଥଟିକୁ ଛପାଇ ନଦେଇ ଛପାଇବା ନିମନ୍ତେ ମୋର ପତ୍ନୀ ଶ୍ରୀମତୀ ଜୟନ୍ତୀ ମିଶ୍ର ବିଶେଷ ଆଗ୍ରହ ପ୍ରଦର୍ଶନ କରିଥିବାରୁ ଶ୍ରୀଜଗନ୍ନାଥଙ୍କ ପାଖରେ ମୁଁ ତାଙ୍କର ଦୀର୍ଘାୟୁ କାମନା କରୁଛି ।

ଶେଷରେ ଗ୍ରନ୍ଥଟି ସୁଧୀପାଠକ ସମାଜର ଉପକାରରେ ଆସିଲେ ଶ୍ରମ ସାର୍ଥକ ମଣିବି ।

—ଲେଖକ

—※—

# ଭୂମିକା

**ଡଃ କୃଷ୍ଣଚରଣ ସାହୁ**
ପ୍ରଫେସର ଓ ବିଭାଗୀୟ ମୁଖ୍ୟ (ଅବସରପ୍ରାପ୍ତ)
ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ୭୫୧୦୦୪

ଡକ୍ଟର ମୂର୍ତ୍ତିଚନ୍ଦ୍ର ମିଶ୍ର 'ପାଠାଲୋଚନାର ଭୂମିକା' ଗ୍ରନ୍ଥଟି ଲେଖି ଓଡ଼ିଆ ସାହିତ୍ୟ ବିଶେଷ କରି ପ୍ରାଚୀନ ଓଡ଼ିଆ ସାହିତ୍ୟ ପାଇଁ ଅଶେଷ ଉପକାର କରିଛନ୍ତି । ଗ୍ରନ୍ଥଟି ପୃଷ୍ଠା ସଂଖ୍ୟା ଦୃଷ୍ଟିରୁ ମୋଟେ ୭୪ ପୃଷ୍ଠା ବିଶିଷ୍ଟ ହେଲେ ହେଁ ଏଥିରେ ପାଠାଲୋଚନା ସମ୍ବନ୍ଧୀୟ ଯାବତୀୟ ଜ୍ଞାତବ୍ୟ ପ୍ରକ୍ରିୟା ଉପରେ ବିଶେଷଭାବେ ଆଲୋକପାତ କରାଯାଇଛି ।

ପ୍ରାଚୀନ ସାହିତ୍ୟର ଅଧିକାଂଶ ଗ୍ରନ୍ଥ ଅଦ୍ୟାବଧି ଅପ୍ରକାଶିତ । ସେ ଯୁଗରେ ଯେଉଁସବୁ କାବ୍ୟ ଲୋକପ୍ରିୟ ହୋଇଥିଲା ବା ଯେଉଁ ସବୁ ଗ୍ରନ୍ଥର ଅନୁଲିପି ସହଜରେ ଉପଲବ୍ଧ ହେଉଥିଲା, ସେ ସବୁକୁ ସଂଗ୍ରହ କରି ପ୍ରକାଶକମାନେ ପ୍ରକାଶିତ କରିଦେଲେ । ସେ ସବୁକୁ ଆଧୁନିକ ଯୁଗୋପଯୋଗୀ କରିବା ନିମନ୍ତେ ସେମାନେ ଆବଶ୍ୟକୀୟ ପରିବର୍ତ୍ତନ କରିବାପାଇଁ ମଧ୍ୟ ପଶ୍ଚାତ୍‌ପଦ ହେଲେ ନାହିଁ । ଫଳରେ ପ୍ରାଚୀନ ପୁରୁଣା ସାହିତ୍ୟ ବିଶେଷ କ୍ଷତିଗ୍ରସ୍ତ ହେଲା । ଏହାର ମୂଳ ଭାଷା, ମୂଳଶୁଦ୍ଧ, ଏପରିକି ମୂଳ ପ୍ରକାଶଭଙ୍ଗୀ ପରିବର୍ତ୍ତିତ ହୋଇ ଏକ ନୂଆ ରୂପ ଧାରଣ କଲା । କବିତା ବା ସଙ୍ଗୀତ ମଧ୍ୟ ସେହିପରି କ୍ଷତିଗ୍ରସ୍ତ ହୋଇଥିଲା । କାବ୍ୟ ସବୁ ଛନ୍ଦୋବଦ୍ଧ ହୋଇଥିବାରୁ ଏବଂ ସେଥିରେ ଶବ୍ଦ ସବୁର ବ୍ୟବହାରରେ ନିର୍ଦ୍ଦିଷ୍ଟ ନିୟମ ତଥା ଶୃଙ୍ଖଳା ଥିବାରୁ ସେ ସବୁକୁ ପରିବର୍ତ୍ତନ କରିବା ସହଜ ହେଲା ନାହିଁ । ତେବେ ବି

ରାଗରାଗିଣୀ ନିର୍ଦ୍ଦେଶ କ୍ଷେତ୍ରରେ ପରିବର୍ତ୍ତନ ଘଟିଛି । ପୁଣି ଅପେକ୍ଷାକୃତ ସହଜ କାବ୍ୟରେ ଲିପିକାରମାନେ ଯେଉଁ ସ୍ୱାଧୀନତା ଅବଲମ୍ବନ କରିଥିଲେ, ପ୍ରକାଶକ କୌଣସି ଗୋଟିଏ ପୋଥିକୁ ପ୍ରକାଶ କରିଦେବା ଫଳରେ ସେ ସବୁ ଦୋଷ, ତ୍ରୁଟିର ନିରାକରଣ କରିବାପାଇଁ ଅକ୍ଷମ ହେଲେ । ପୁଣି ପ୍ରାଚୀନ ସାହିତ୍ୟ ବିଶେଷ କରି ପଦ୍ୟ ଯୁଗ ହୋଇଥିବାରୁ, ସେ ସମୟରେ ରଚିତ ଗଦ୍ୟ ଗ୍ରନ୍ଥର ଅଧିକ ଅନୁଲିପି ପ୍ରସ୍ତୁତ ହୋଇପାରି ନଥିଲା । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ରଚିତ ଅଧିକାଂଶ କାବ୍ୟ କବିତା ପରବର୍ତ୍ତୀ ରୀତିଯୁଗୀୟ କାବ୍ୟ କବିତାର ଲୋକପ୍ରିୟତା ନିକଟରେ ମ୍ଲାନ ହୋଇଯିବା ହେତୁ ସେ ସବୁର ଅଧିକ ଅନୁଲିପି ମଧ୍ୟ ପ୍ରସ୍ତୁତ ହୋଇନଥିଲା । ଫଳରେ ସହଜଲଭ୍ୟ କାବ୍ୟ କବିତାକୁ ଆଧାର କରି ପ୍ରଥମେ ଯେଉଁମାନେ ଓଡ଼ିଆ ସାହିତ୍ୟର ଇତିହାସ ରଚନା କରିବାକୁ ଉଦ୍ୟମ କଲେ, ସେମାନେ ପ୍ରାଚୀନ ସାହିତ୍ୟରେ କେବଳ ପଦ୍ୟର ପ୍ରଭାବ ଦେଖିବାକୁ ପାଇଥିଲେ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ କେବଳ କେତେକଜଣ ପୁରାଣକାରଙ୍କ ବ୍ୟତୀତ ଅନ୍ୟମାନଙ୍କୁ ସେମାନେ ଦେଖିପାରି ନଥିଲେ । ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରାଚୀ ସମିତି ଏ ଦିଗରେ ପ୍ରଶଂସନୀୟ ଉଦ୍ୟମ କରିଥିଲେ ହେଁ, ପ୍ରାଚୀନ ସାହିତ୍ୟର ଅନ୍ୱେଷଣ ପାଇଁ ଯେଉଁ ବିଧିବଦ୍ଧ ପ୍ରଚେଷ୍ଟା ଆବଶ୍ୟକ ଥିଲା, ତାହା ସେତେବେଳେ ତ ହୋଇ ପାରିନଥିଲା, ଏବେ ମଧ୍ୟ ହୋଇନାହିଁ ।

ପ୍ରାଚୀ ସମିତି ପରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ଏ ଦିଗରେ ପ୍ରଚେଷ୍ଟା ଆରମ୍ଭ ହେଲା ଓ ଏହାର ଦାୟିତ୍ୱ ନେଲେ ସ୍ୱର୍ଗୀୟ କେଦାର ନାଥ ମହାପାତ୍ର ଓ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା । ଏମାନେ ପ୍ରାଚୀନ ସାହିତ୍ୟର ଅନୁରାଗୀ ଥିଲେ । ସେଥିପାଇଁ ସେମାନଙ୍କ ପ୍ରଚେଷ୍ଟା ଫଳରେ ବହୁ ଅଜ୍ଞାତ ଓ ଅପ୍ରକାଶିତ ଗ୍ରନ୍ଥ ସମ୍ପାଦିତ ହୋଇ ପ୍ରକାଶିତ ହେଲା । ତେବେ ବି ପ୍ରାଚୀନ ସାହିତ୍ୟର ଅଧିକାଂଶ ଭାଗ ଏବେ ବି ପୋଥିଗଦା ମଧ୍ୟରେ ଲୁକ୍କାୟିତ ଅବସ୍ଥାରେ ରହିଛି ।

ପ୍ରଥମେ ତ ଧାରଣା ଥିଲା ଯେ ଓଡ଼ିଆରେ ଗଦ୍ୟ-ସାହିତ୍ୟର ସୃଷ୍ଟି ହେଲା ଊନବିଂଶ ଶତାବ୍ଦୀରେ । ଅଧ୍ୟାପକ ଆର୍ତ୍ତବଲ୍ଲଭ ଗଦ୍ୟ ନାମରେ କେତେକ ଟୀକା ଗ୍ରନ୍ଥକୁ ଗ୍ରହଣ କଲେ । ଶିଳାଲେଖକୁ ବି ଗଦ୍ୟ ସାହିତ୍ୟ

ଭାବେ ବିଗ୍ଭର କରାଗଲା । ବହୁଦିନ ପର୍ଯ୍ୟନ୍ତ ମାଦଳାପାଞ୍ଜିର ଭାଞ୍ଜି ଲେଖା ଶୈଳୀକୁ ମଧ୍ୟ ଗଦ୍ୟ-ସାହିତ୍ୟର ଅନ୍ତର୍ଭୁକ୍ତ କରି ବିଗ୍ଭର କରାଗଲା । ଏସବୁ ଉପାଦାନ ଓଡ଼ିଆରେ ଗଦ୍ୟ ଶୈଳୀର ବିକାଶକ୍ରମର ସୂଚନା ଦେଉଥିଲେ ହେଁ, ଏସବୁ ଗଦ୍ୟ ସାହିତ୍ୟ ନଥିଲା । 'ରୁଦ୍ର ସୁଧାନିଧି', 'ବ୍ରହ୍ମାଣ୍ଡ ଚିନ୍ତାମଣି' ଓ 'ଚତୁର ବିନୋଦ' ପ୍ରଭୃତି ଗଦ୍ୟ ଗ୍ରନ୍ଥ ଆବିଷ୍କୃତ ହେବାପରେ ପ୍ରାଚୀନ ଗଦ୍ୟ ସାହିତ୍ୟ ସମ୍ପର୍କରେ ଏକ ସ୍ଥୂଳ ଧାରଣା ସୃଷ୍ଟି ହୋଇପାରିଥିଲା । ଏସବୁ ସତ୍ତ୍ୱେ ଦଶମରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ଏ ଦେଶରେ କି ଭାଷା ଚଳୁଥିଲା, କି ପ୍ରକାର ସାହିତ୍ୟ ସୃଷ୍ଟି ହୋଇଥିଲା, ତାହା ଜାଣିବା ସମ୍ଭବ ହୋଇ ନାହିଁ ।

ପ୍ରାଚୀନ ସାହିତ୍ୟର ଉଦ୍ଧାର ବା ଆବିଷ୍କାର ସହିତ ପାଠାଲୋଚନା ନିବିଡ଼ ଭାବେ ସଂଶ୍ଳିଷ୍ଟ । କାରଣ ପାଠାଲୋଚନା ଦ୍ୱାରା ହିଁ ଗ୍ରନ୍ଥର ପ୍ରାଚୀନ ରୂପ ସଂରକ୍ଷିତ ହୋଇଥାଏ ।

ପାଠାଲୋଚନା ନିଶ୍ଚିତ ଭାବେ ଉଚ୍ଚତର ସମାଲୋଚନା ନୁହେଁ । କାରଣ ପ୍ରାଚୀନ ଗ୍ରନ୍ଥର ପାଠ ନିର୍ଣ୍ଣୟ କଲାବେଳେ ସମ୍ପାଦକର ଅଧିକାଂଶ ଶ୍ରମ ପାଠ ନିର୍ଣ୍ଣୟ କରିବାରେ ନିୟୋଜିତ ହୋଇଥାଏ । ଏକାଧିକ ପୋଥିର ସଂଗ୍ରହ, ଅନୁଲିପି ପ୍ରସ୍ତୁତି, ବିଭିନ୍ନ ପାଠର ତୁଳନାତ୍ମକ ବିଗ୍ଭର ପୁଣି ବିକୃତ ଶବ୍ଦ ରୂପର ପରୀକ୍ଷା ନିରୀକ୍ଷା ପୂର୍ବକ ସମ୍ଭାବିତ ଶୁଦ୍ଧପାଠ ନିର୍ଣ୍ଣୟ ପାଇଁ ସମ୍ପାଦକ କେବଳ ଶାରୀରିକ ଶ୍ରମ କରେ ନାହିଁ, ସେ ଏଥିପାଇଁ ତା'ର ଜ୍ଞାନ, ବୁଦ୍ଧି, ପ୍ରଜ୍ଞା ଓ ପାଣ୍ଡିତ୍ୟର ମଧ୍ୟ ସାହାଯ୍ୟ ନେଇଥାଏ । ପାଠାଲୋଚନାର ବିଭିନ୍ନ ସମସ୍ୟାକୁ ପାଠକମାନଙ୍କ ଅବଗତି ନିମନ୍ତେ ଉପସ୍ଥାପନ କରିବା ତା'ର ପ୍ରଧାନ ତଥା ପ୍ରଥମ କାର୍ଯ୍ୟ ହୋଇଥିବାରୁ ସେ ପ୍ରଥମେ ସେହି କାର୍ଯ୍ୟକୁ ବିଶ୍ୱସ୍ତତାର ସହିତ ପାଳନ କରିଥାଏ । କିନ୍ତୁ ସେ ଯଦି ପାଠ ନିର୍ଣ୍ଣୟରେ ସଫଳ ହୋଇପାରେ, ତାହାହେଲେ ସେହି ଅଜ୍ଞାତ କବିର ଅଜ୍ଞାତ କବିତି ତା'ର ଶବ୍ଦ ସମ୍ଭାର, କଥନ ଶୈଳୀ, ସାମାଜିକ ତଥା ସାଂସ୍କୃତିକ ସଚେତନତା ମଧ୍ୟରେ କବିତ୍ୱ ପ୍ରସଙ୍ଗଟିକୁ ଧରି ଉଚ୍ଚତର ସମାଲୋଚନା ପାଇଁ ପଥ ଉନ୍ମୁକ୍ତ କରିଦିଏ ।

ପାଠାଲୋଚନା କାର୍ଯ୍ୟଟି ବଡ଼ ଦୁରୂହ ବ୍ୟାପାର । ସାଧାରଣତଃ ବହୁ ପୋଥିରେ ଯେଉଁ ପାଠଥାଏ ତାହାକୁ ଅନେକ ଶୁଦ୍ଧପାଠ ବୋଲି ଗ୍ରହଣ କରି ନେଇଥାନ୍ତି । ଏହା ସବୁବେଳେ ନିର୍ଭୁଲ ହୋଇନପାରେ । ଏକଥା ବୁଝାଇବା ପାଇଁ ଡକ୍ଟର ମିଶ୍ରଙ୍କ ପ୍ରଦତ୍ତ ଗୋଟିଏ ଉଦାହରଣକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ ।

"ଉଦାହରଣ ସ୍ୱରୂପ ଓଡ଼ିଆ ଭାଗବତର ବିଭିନ୍ନ ସଂସ୍କରଣରେ ନିମ୍ନୋକ୍ତ ପଦଟିର ଦୁଇଟି ରୂପ ଦେଖିବାକୁ ମିଳେ ।" ଯଥା:—

୧) "ଆପଣା ହସ୍ତେ ଜିହ୍ୱା ଛେଦ
କେ ତା'ର ଅଛି ପ୍ରତିବାଦ ।"

୨) "ଆପଣା ଦନ୍ତେ ଜିହ୍ୱା ଛେଦ
କେ ତା'ର ଅଛି ପ୍ରତିବାଦ ।"

ପ୍ରଥମ ଉଦାହରଣରେ 'ହସ୍ତେ' ଥିବାବେଳେ ଦ୍ୱିତୀୟ ଉଦାହରଣରେ 'ଦନ୍ତେ' ଶବ୍ଦର ପ୍ରୟୋଗ କରାଯାଇଛି । ପ୍ରଥମଟିର ଅର୍ଥ ହସ୍ତ ଦ୍ୱାରା ଜିହ୍ୱା ଛେଦନକୁ ବୁଝାଉଥିବା ବେଳେ ଦ୍ୱିତୀୟଟିରେ ଦନ୍ତ ଦ୍ୱାରା ଜିହ୍ୱା ଛେଦନ କରିବା କଥାକୁ ବୁଝାଉଅଛି । କେତେକ ପୋଥିରେ ଦନ୍ତେ ଥିବା ସତ୍ତ୍ୱେ ହାତରେ ଜିହ୍ୱା ଛେଦନକୁ ପାଠାନ୍ତର ବୋଲି ଗ୍ରହଣ କରନ୍ତି । ପୁନଶ୍ଚ ସଂସ୍କୃତ ପାଠକୁ ନିର୍ଭର କରି ଦନ୍ତେକୁ ଶୁଦ୍ଧପାଠ ରୂପେ ଗ୍ରହଣ କରାଯାଇ-ପାରେ । କିନ୍ତୁ ବିଭିନ୍ନ ଅଞ୍ଚଳର ପୋଥି ଉପରେ ନିର୍ଭର କରି ତଥା ଅଧିକାଂଶ ପୋଥିରେ ହସ୍ତେ ଥିଲେ 'ହସ୍ତେ' ଶବ୍ଦଟି ଗ୍ରହଣୀୟ ।" (ପୃ.୭୦)

ସମସ୍ୟା ଏତେ ସହଜ ନୁହେଁ । ପ୍ରଥମ ପ୍ରଶ୍ନ ହେଲା ଜଗନ୍ନାଥ ଦାସ ସବୁବେଳେ ସଂସ୍କୃତ ପ୍ରୟୋଗକୁ ଅନୁସରଣ କରୁଥିଲେ କି ?

ଦ୍ୱିତୀୟ ପ୍ରଶ୍ନ ହେଲା, ଓଡ଼ିଆରେ 'ଛେଦନ' କ୍ରିୟାର ପ୍ରୟୋଗଗତ ଅର୍ଥ ।

ପ୍ରଥମେ ଦ୍ୱିତୀୟ ପ୍ରଶ୍ନ ଆଲୋଚନା କରାଯାଉ । ଓଡ଼ିଆରେ ଛେଦିବା କ୍ରିୟାର ଅର୍ଥ ଦେଇ ପଣ୍ଡିତ ଗୋପୀନାଥ ନନ୍ଦ ଲେଖିଛନ୍ତି "ଛେଦିବା, କ୍ରି. (ଛିଦ୍ ଧାତୁଜ) ହାଣିବା ।" (ଶବ୍ଦତତ୍ତ୍ୱବୋଧ ଅଭିଧାନ, ପୃ. ୪୭୧) ଏଠି

କେବଳ ଗୋଟିଏ ଅର୍ଥ ଦିଆଯାଇଥିଲେ ହେଁ ଛେଦିବାକୁ କାଟିବା ଅର୍ଥରେ ମଧ୍ୟ ସାଧାରଣତଃ ବ୍ୟବହାର କରାଯାଇଥାଏ । ଦାନ୍ତରେ ଜିଭ କଟିଗଲା ଅର୍ଥାତ୍ କାମୁଡ଼ି ହୋଇଗଲା (ଟିକିଏ ଖଣ୍ଡିଆ ହୋଇଯିବା ଅର୍ଥରେ) । କିନ୍ତୁ ହସ୍ତରେ ଜିହ୍ୱା ଛେଦନର ଅର୍ଥ ହେଲା, ଟିକେ ନୁହେଁ ପୂରା କାଟିଦେବା । ତେଣୁ ଯେଉଁ ଲିପିକାରମାନେ 'ଟିକେ କାମୁଡ଼ି ହୋଇଯିବା' ଅର୍ଥ ନେଲେ ଓ ସଂସ୍କୃତକୁ ପାଖରେ ରଖି ବିଚାର କଲେ; ସେମାନେ 'ଦନ୍ତେ' ଓ 'ଛେଦି'କୁ ରଖିଲେ । ପୁଣି ଯେଉଁମାନେ 'ପୂରା କାଟି ହୋଇଯିବା' ଅର୍ଥକୁ ଗ୍ରହଣ କଲେ ସେମାନେ 'ହସ୍ତେ' ଓ 'ଛେଦି'କୁ ରଖିଲେ । କାରଣ ଦନ୍ତ ଦ୍ୱାରା ଏହି କାର୍ଯ୍ୟ ସମ୍ଭବ ନୁହେଁ । ଦ୍ୱିତୀୟ ପାଦରେ 'କେ ତା'ର ଅଛି ଚିହ୍ନିବାକୁ' ପରି ଆହ୍ୱାନ ତଥା ଶକ୍ତି ସୂଚକ ଶବ୍ଦ ଥିବାରୁ ପୁଣି ଓଡ଼ିଆ ଭାଷାର ସନ୍ଦସମ୍ମତ ବ୍ୟବହାରକୁ ଆଖିରେ ରଖି 'ହସ୍ତେ' ଓ 'ଛେଦି' ପାଠକୁ ସମ୍ଭାବ୍ୟ ମୂଳପାଠ ରୂପେ ଗ୍ରହଣ କରାଯାଇପାରେ । ଜଗନ୍ନାଥ ଦାସ ମଧ୍ୟ ଅଧିକାଂଶ ସମୟରେ ଓଡ଼ିଆରେ ପ୍ରଚଳିତ ପ୍ରୟୋଗ ଦ୍ୱାରା ହିଁ ଅନୁବାଦ କରୁଥିଲେ । ତେଣୁ କେବଳ ଅଧିକାଂଶ ପୋଥିରେ ଥିବା ହେତୁ ନୁହେଁ ଓଡ଼ିଆ ଭାଷାର ପ୍ରୟୋଗଗତ ବୈଶିଷ୍ଟ୍ୟ ଯୋଗୁଁ ଏହି ପାଠ ଅଧିକ ଶୁଦ୍ଧ । ପୁଣି ସମ୍ପାଦନାର ସବୁଠାରୁ ବଡ଼ ନିୟମ ହେଲା ଯେ ଯଦି କୌଣସି ପୋଥିରେ ଏପରି ଏକ ଶବ୍ଦ ବ୍ୟବହୃତ, ଯାହାର ଅର୍ଥ ଜାଣିବା ସହଜ ନୁହେଁ ଏବଂ ଅନ୍ୟ ସବୁ ପୋଥିରେ ସେ ଶବ୍ଦ ପାଇଁ ଏକାଧିକ ଶବ୍ଦ ବ୍ୟବହୃତ ସେ ସ୍ଥଳରେ ବୁଝି ହେଉନଥିବା ଶବ୍ଦଟିକୁ ଆଖିବୁଜି ସମ୍ପାଦକକୁ ଗ୍ରହଣ କରିବାକୁ ହୋଇପାରେ । ତା'ପରେ ସେ ସେହି ଶବ୍ଦର ଇତିହାସ ଖୋଜି ସମସ୍ୟାର ସମାଧାନ କରେ । ଚଣ୍ଡୀ ପୁରାଣରେ 'ମୀର', 'ଅମୀର', 'ଜୀର', 'ଅଜୀର' ଓ ଜଗମୋହନ ରାମାୟଣରେ 'ଗିଲମି', 'ପଇଡ଼ି', 'ମାଠ' ଏହି ଶ୍ରେଣୀୟ ଶବ୍ଦ । ଏ ସବୁର ଅର୍ଥ ନିରୂପଣ ବିଶିଷ୍ଟ ଲିପିକାର ଏପରିକି ପ୍ରକାଶକଙ୍କ ପାଇଁ ସହଜ ନଥିଲା । ସେଥିପାଇଁ ସେମାନେ ଏହାର ପରିବର୍ତ୍ତିତ ଅଥବା ବିକୃତ ରୂପ ଗ୍ରହଣ କରିଥିଲେ । ତେଣୁ ଏପରି ସ୍ଥଳେ ଗୋଟିଏ ପୋଥିର ପାଠ ସମ୍ଭାବ୍ୟ ମୂଳ ପାଠ ରୂପେ ଗୃହୀତ ହୋଇଥିଲା । ଏଥିରୁ ପାଠାଲୋଚନା ପ୍ରକ୍ରିୟା କେତେ କଠିନ କାର୍ଯ୍ୟ ତାହା ଉପଲବ୍ଧ ହେବ ।

ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର ଓଡ଼ିଆରେ 'ପାଠାଲୋଚନାର ଭୂମିକା' ଗ୍ରନ୍ଥଟି ପ୍ରସ୍ତୁତ କରି ପାଠାଲୋଚନାର ବିଭିନ୍ନ ଆବଶ୍ୟକୀୟ ଅଙ୍ଗ ଉପରେ ଆଲୋକପାତ କରିଛନ୍ତି । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ବହୁ ପାଶ୍ଚାତ୍ୟ ଓ ପ୍ରାଚ୍ୟ ବିଦ୍ୱାନ ସଂସ୍କୃତ ଗ୍ରନ୍ଥ ସବୁର ସଂପାଦନା କଲାବେଳେ ଯେଉଁସବୁ ସମସ୍ୟାର ସମ୍ମୁଖୀନ ହୋଇଥିଲେ, ସେ ସବୁର ଶୃଙ୍ଖଳିତ ରୂପ ହିଁ ପାଠାଲୋଚନା ବିଜ୍ଞାନର ମୂଳ ଭିତ୍ତି । ଇଂରେଜୀ, ହିନ୍ଦୀ ଓ ବଙ୍ଗଳା ଭାଷାରେ ଏଥିପାଇଁ ଏକାଧିକ ଗ୍ରନ୍ଥ ଥିଲେ ହେଁ, ଓଡ଼ିଆ ଭାଷାରେ ଏହାର ଅଭାବ ଅନୁଭୂତ ହେଉଥିଲା । ଡକ୍ଟର ମିଶ୍ର ସେହିସବୁ ବିଦ୍ୱାନମାନଙ୍କ ବିଚାର ଓ ବିଶ୍ଳେଷଣ ପ୍ରକ୍ରିୟାକୁ କେବଳ ଯେ ଅନୁଧ୍ୟାନ କରିଛନ୍ତି ତାହା ନୁହେଁ, ଓଡ଼ିଆ ପାଣ୍ଡୁଲିପି ସବୁର ବିଭିନ୍ନ ସମସ୍ୟାକୁ ନିଜେ ଅନୁସନ୍ଧାନ କରି, ସଂସ୍କୃତ ଉଦାହରଣ ପରିବର୍ତ୍ତେ ଓଡ଼ିଆ ଉଦାହରଣ ଦେଇ ନିଜ ବକ୍ତବ୍ୟକୁ ପରିପୁଷ୍ଟ କରିଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଉଦ୍ଧାର କରି ସୁସଂପାଦିତ କରି ପ୍ରକାଶ କରିବାକୁ ହେଲେ ପାଠାଲୋଚନାର ଜ୍ଞାନ ଅତ୍ୟନ୍ତ ଆବଶ୍ୟକ । ସେ ଦୃଷ୍ଟିରୁ ଡକ୍ଟର ମିଶ୍ରଙ୍କର ଏହି ଗ୍ରନ୍ଥଟି ସୁଧୀ ସମାଜରେ ଆଦୃତ ହେବ ବୋଲି ଆଶା ।

—*—

# ସୂଚୀ





# ପାଠାଲୋଚନା

ପାଠାଲୋଚନା (*Textual Criticism*)କୁ ସମାଲୋଚନା ସାହିତ୍ୟର ଏକ ବିଭାବ ରୂପେ ଗ୍ରହଣ କରାଯାଏ । ଗ୍ରନ୍ଥର ପାଠ ସହିତ ଏହା ବିଶେଷ ରୂପେ ସମ୍ବନ୍ଧାନ୍ୱିତ ହୋଇଥିବାରୁ ଏହାକୁ ପାଠାଲୋଚନା ଭାବରେ ନାମିତ କରାଯାଇଅଛି । ଡ଼ଃ ପୋଷ୍ଟଗେଟଙ୍କ ମତରେ 'କୌଣସି ରଚନାର ମୂଳପାଠ ନିର୍ଦ୍ଧାରଣ ନିମନ୍ତେ ସ୍ୱୀକୃତ ତଥା ବିଧି ବିହିତ ପ୍ରକ୍ରିୟାକୁ ପାଠାଲୋଚନା କୁହାଯାଏ' । (୧) ତେଣୁ ପାଠାଲୋଚନାର ମୂଳ ଉଦ୍ଦେଶ୍ୟ ହେଉଛି କୌଣସି ହସ୍ତଲିଖିତ ଗ୍ରନ୍ଥ ମଧ୍ୟରୁ ମିଳୁଥିବା ସାକ୍ଷ୍ୟ ପ୍ରମାଣ ଦ୍ୱାରା ନିଜର ଆଲୋଚନାକୁ ଦୃଢ଼ୀଭୂତ କରି ଏକ ସୁକ୍ତିନିଷ୍ଠ ସିଦ୍ଧାନ୍ତ ମାଧ୍ୟମରେ ପାଠ ନିର୍ଣ୍ଣୟ କରିବା ।

ହସ୍ତଲିଖିତ ଗ୍ରନ୍ଥର ସମ୍ଭାବ୍ୟ ମୂଳ ପାଠ ନିର୍ଦ୍ଧାରଣ ପାଇଁ କେତେକ ପ୍ରମାଣ ସିଦ୍ଧ ସମ୍ଭାବିତ ଉପାୟ ତଥା ଗ୍ରନ୍ଥକାରର ଅଭିଷ୍ଟ ପ୍ରତି ସତର୍କ ରହିବା ଏକାନ୍ତ ଆବଶ୍ୟକ । ଅର୍ଥାତ୍ ଗ୍ରନ୍ଥର ସମ୍ଭାବ୍ୟ ମୂଳରୂପ ଓ ସେହି ପାଠ ସମ୍ପର୍କିତ ଆଲୋଚନାକୁ ପାଠାଲୋଚନା ବୋଲି ଗ୍ରହଣ କରାଯାଏ ।

ବ୍ୟାବହାରିକ ଦୃଷ୍ଟିଭଙ୍ଗୀରୁ ଏହି ପାଠାଲୋଚନାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ ।

କ) ପାଠ ସଂଶୋଧନ (**Recession**)

ଖ) ପାଠ ସଂସ୍କାର (*Emendation*)

---

୧) *A Companion to Latin Studies by J. P. Postgate, 1913, P.79* ।

ପାଠ ସଂଶୋଧନର ଅର୍ଥ ହେଉଛି କବି ଦ୍ୱାରା ରଚିତ ପାଠର ମୂଳରୂପ ନିକଟରେ ପହଞ୍ଚିବା ନିମନ୍ତେ ଆବଶ୍ୟକୀୟ ସଂଶୋଧନ । ଏହା ସମ୍ପୂର୍ଣ୍ଣ ଆଭ୍ୟନ୍ତରୀଣ ସାକ୍ଷ୍ୟ ଓ ଆଲୋଚନା ଦ୍ୱାରା କରାଯାଉଥିବାରୁ ଅଧିକ ପ୍ରାମାଣିକ ପନ୍ଥା ରୂପେ ସ୍ୱୀକୃତ । ଏହାକୁ ସମ୍ପାଦନା (*Editing*) ମଧ୍ୟ କୁହାଯାଇପାରେ । କିନ୍ତୁ ପାଠ ସଂସ୍କାର ହେଉଛି ଉତ୍କୃଷ୍ଟତମ ରୁଚିବୋଧ ବିଶିଷ୍ଟ ପାଠ ନିର୍ଣ୍ଣୟ ନିମନ୍ତେ ହସ୍ତଲିଖିତ ପାଠକୁ ମାର୍ଜିତ କରିବା । ଏହା ଦ୍ୱାରା ପାଠଟି ମୂଳରଚନାଠାରୁ କ୍ରମଶଃ ଦୂରେଇ ଯାଏ । ତେଣୁ ଏହା ବିଶେଷ ପ୍ରମାଣ ସିଦ୍ଧ ପନ୍ଥା ନୁହେଁ । ଏହାକୁ ସଂକଳନ (*Compilation*) ଆଖ୍ୟା ଦିଆଯାଇପାରେ । ପାଠ ସଂଶୋଧନ ସମୟରେ ସଂଶୋଧନକାରୀ ବା ଅନୁସନ୍ଧାନ କର୍ତ୍ତାଙ୍କୁ ଯେତିକି ପରିଶ୍ରମ କରିବାକୁ ପଡେ ପାଠ ସଂସ୍କାର ବେଳେ ତଦନୁରୂପ ପରିଶ୍ରମ କରିବାକୁ ପଡେ ନାହିଁ । ପୁନଶ୍ଚ ପାଠ ସଂଶୋଧନ ସମୟରେ ପ୍ରତ୍ୟେକ ପଦ ସଂଯୋଜନା ଯେପରି ମୂଲ୍ୟବାନ ରୂପେ ଗୃହୀତ ହୋଇ ଗ୍ରନ୍ଥକର୍ତ୍ତାର ଭାବକୁ ଅକ୍ଷୁର୍ଣ୍ଣ ଭାବେ ପରିବେଷଣ କରିପାରେ ପାଠ ସଂସ୍କାର ସମୟରେ ସେପରି ହୁଏ ନାହିଁ । ତେଣୁ ପାଠ ସଂସ୍କାର ଅପେକ୍ଷା ପାଠ ସଂଶୋଧନ ଅଧିକ ପ୍ରମାଣ ସିଦ୍ଧ ତଥା ଯୁକ୍ତିନିଷ୍ଠ ।

ପାଠ ସଂଶୋଧନ ସମୟରେ ସଂଶୋଧକ ଯେଉଁସବୁ ପ୍ରମାଣ ଉପରେ ନିର୍ଭର କରି ପାଠଗତ ବିଭିନ୍ନ ସମସ୍ୟାକୁ ସମାଧାନ କରି ଶେଷ ସିଦ୍ଧାନ୍ତରେ ଉପନୀତ ହୁଏ ତାହାକୁ ପାଠାଲୋଚନା କୁହାଯାଏ ବୋଲି ହଲଙ୍କ ମତ । (୨) ସଂଶୋଧକ ବା ଅନୁସନ୍ଧାନ କର୍ତ୍ତାଙ୍କୁ ମୂଳପାଠ ନିକଟରେ ପହଞ୍ଚିବା ନିମନ୍ତେ ସାଂସ୍କୃତିକ, ଐତିହାସିକ, ଭାଷାତାତ୍ତ୍ୱିକ, ସାମାଜିକ, ରାଜନୀତିକ ତଥା ସାହିତ୍ୟିକ ଆଦି ବିଭିନ୍ନ ଦୃଷ୍ଟି କୋଣରୁ ବିଚାର କରିବାକୁ ପଡେ । ସେଥିପାଇଁ ତାଙ୍କୁ ପାଠାଲୋଚନାର ଚାରିଗୋଟି ପର୍ଯ୍ୟାୟ କ୍ରମିକ ମାର୍ଗ ପ୍ରତି ସଚେତନ ରହିବା ଏକାନ୍ତ ଅପରିହାର୍ଯ୍ୟ । ଏହି ଚାରିଗୋଟି ମାର୍ଗ ହେଲା:—

କ) ଅନୁସନ୍ଧାନ (*Heuristics*)

ଖ) ସଂଶୋଧନ (*Recensio*)

ଗ) ସଂସ୍କାର (*Emendatio*)

ଘ) ଉଚ୍ଚତର ଆଲୋଚନା (*Higher Criticism*)

---

୨) *Companion to Classical Texts by F.W. Hall, 1913, p.3*

ଅନୁସନ୍ଧାନ:—ଏଥିରେ ହସ୍ତଲିଖିତ ଗ୍ରନ୍ଥ ଏବଂ ତାହାର ସମସ୍ତ ସାକ୍ଷ୍ୟ ସାମଗ୍ରୀକୁ ଏକତ୍ର କରି ଗ୍ରନ୍ଥର ଏକ ବଂଶବୃକ୍ଷ ନିର୍ମାଣ କରିବାକୁ ହେବ । ଏଥିପାଇଁ ଏକାଧିକ ହସ୍ତଲିଖିତ ଗ୍ରନ୍ଥ ସଂଗ୍ରହ କରିବା ଆବଶ୍ୟକ ।

ସଂଶୋଧନ:—ଉପରୋକ୍ତ ସାମଗ୍ରୀକୁ ପୁନଃସ୍ଥାପନ କରିବା ବିଧାନକୁ ସଂଶୋଧନ କୁହାଯାଏ ।

ସଂସ୍କାର:—ଗ୍ରନ୍ଥକର୍ତ୍ତା ଦ୍ୱାରା ଲିଖିତ ପାଠର ପୁନଃସ୍ଥାପନ । ଏଥିରେ ପାଠର ଗ୍ରହଣ, ବର୍ଜନ ଓ ସଂଶୋଧନ କାର୍ଯ୍ୟ କରାଯାଏ ।

ଉଚ୍ଚତର ଆଲୋଚନା:—ଗ୍ରନ୍ଥକର୍ତ୍ତା ଦ୍ୱାରା ଉପଯୋଗ ପାଠର ପ୍ରଯୁକ୍ତମାର୍ଗ ବା ଉଦ୍ଦେଶ୍ୟର ବିବେଚନା ବା ଆଲୋଚନା ।

ହସ୍ତ ଲିଖିତ ଗ୍ରନ୍ଥର ପ୍ରସ୍ତୁତ ନିମନ୍ତ ସମସ୍ତ ସାମଗ୍ରୀକୁ ବା ସୂତ୍ରକୁ କିମ୍ବା ସୂତ୍ର ପାଇବା ନିମନ୍ତେ ସହାୟକ ଉପାଦାନକୁ ଏକତ୍ର କରି ବିବେଚନା କରିବାକୁ ହୁଏ । ଏହି ବିବେଚନା ଦ୍ୱାରା ଗ୍ରନ୍ଥର ବଂଶବୃକ୍ଷ ନିର୍ମାଣ ସହଜ ସାଧ୍ୟ ହୋଇପାରେ । ଏହି ପ୍ରଣାଳୀ ବ୍ୟତୀତ ଅଞ୍ଚଳ ଦୃଷ୍ଟିରୁ ମଧ୍ୟ ବଂଶବୃକ୍ଷ ନିର୍ମାଣ କରାଯାଇପାରେ ।

ଗ୍ରନ୍ଥର ମୂଳ ପାଠ ନିର୍ଣ୍ଣୟ ନିମନ୍ତେ ବଂଶ ବୃକ୍ଷର ଯେପରି ଆବଶ୍ୟକତା ରହିଛି ସେହିପରି ପରବର୍ତ୍ତୀ ଗ୍ରନ୍ଥରେ ଥିବା ସଂକ୍ଷିପ୍ତ ବା ଅନୁକୂଳିତ ଭାବରେ ଥିବା ଉଦ୍ଧୃତ ଓ ପ୍ରାଚୀନ ଟୀକାରେ ଥିବା ପାଠର ଉଦ୍ଧାରକୁ ସହାୟକ ସାମଗ୍ରୀରୂପେ ଗ୍ରହଣ କରାଯାଇପାରେ ।

ହସ୍ତଲିଖିତ ଗ୍ରନ୍ଥଗୁଡ଼ିକ ବହୁ ପ୍ରାଚୀନ କାଳରୁ ଲିପ୍ୟାନ୍ତରିତ ହୋଇ ବିଭିନ୍ନ ଲେଖନକାରଙ୍କ ଲେଖନୀ ସ୍ପର୍ଶରେ ପ୍ରଚାର ତଥା ପ୍ରସାର ଲାଭ କରି ଆସିଛି । ଏହି ଲେଖନକାରଙ୍କ ଜ୍ଞାତ ସାରରେ ହେଉ ବା ଅଜ୍ଞାତ ସାରରେ ହେଉ ମୂଳ ଗ୍ରନ୍ଥରେ କେତେକ ପରିବର୍ତ୍ତନ ଘଟିଥାଏ । ଏହି ପରିବର୍ତ୍ତନ କାଳକ୍ରମେ ଗ୍ରନ୍ଥକୁ ମୂଳପାଠ ଠାରୁ ଦୂରେଇ ନେବା ସଙ୍ଗେ ସଙ୍ଗେ ଗ୍ରନ୍ଥକର୍ତ୍ତାର ଭାବଠାରୁ ମଧ୍ୟ ଦୂରେଇ ନିଏ । କେବଳ ସେତିକି ନୁହେଁ, ଲେଖନକାର ସମୟ ସମୟରେ ନିଜର ପାଣ୍ଡିତ୍ୟ ତଥା ଆଞ୍ଚଳିକ ପ୍ରୀତିକୁ ନେଇ

ଗ୍ରନ୍ଥରେ କିଛି ନୂତନ ପାଠର ସଂଯୋଗ କରିଥିବାର ଦେଖିବାକୁ ମିଳେ । ତେଣୁ ମୂଳପାଠ ନିର୍ଦ୍ଧାରଣ କରି ତା'ର ଆଲୋଚନା କରିବା ହେଉଛି ପାଠାଲୋଚନାର ମୂଳ ଉଦ୍ଦେଶ୍ୟ । ପାଠାଲୋଚନାର ଅନ୍ତିମ ଅବସ୍ଥା ହେଉଛି ଲେଖକ ଦ୍ୱାରା ପ୍ରଯୁକ୍ତ ବିଭିନ୍ନ ଧାରାର ପୃଥକୀକରଣ । ଏହି ପ୍ରଣାଳୀ ସମ୍ବନ୍ଧରେ ଜର୍ମାନ ବିଦ୍ୱାନ ଲୁଡ଼ର ପ୍ରାରମ୍ଭିକ ଉଦ୍ୟମ କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ବିଭିନ୍ନ ପାଶ୍ଚାତ୍ୟ ତଥା ଭାରତୀୟ ବିଦ୍ୱାନମାନେ ଏହାକୁ ସ୍ୱୀକୃତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ସମାଲୋଚନା ସାହିତ୍ୟର ବିଭବ ରୂପେ ଗ୍ରହଣ କରିନେଲେ । ତେଣୁ 'ପାଠାଲୋଚନା' ବିଧାନର ବିଭିନ୍ନ ପଦ୍ଧତି ଅବଲମ୍ବନରେ ଭାରତର ବିଭିନ୍ନ ପ୍ରାନ୍ତରେ ପଞ୍ଚତନ୍ତ୍ର, ସଂସ୍କୃତ ମହାଭାରତ, ରାମାୟଣ ଓ କାଳିଦାସ ଆଦିଙ୍କ ରଚନାବଳୀର ମୂଳପାଠ ନିର୍ଣ୍ଣୟ କରାଗଲା । କିନ୍ତୁ ଭଣ୍ଡାରକରର ଓରିଏଣ୍ଟାଲ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ ଦ୍ୱାରା ସଂପାଦିତ ସଂସ୍କୃତ ମହାଭାରତର ଆଲୋଚନାତ୍ମକ ସଂସ୍କରଣରୁ ଜଣାଯାଏ ଯେ ୟୁରୋପୀୟ ବିଦ୍ୱାନଙ୍କ ଦ୍ୱାରା ବିକଶିତ ପାଠାଲୋଚନା ପଦ୍ଧତି ଭାରତୀୟ ପାଠାଲୋଚନା ପାଇଁ ସହାୟକ ହେଲେ ମଧ୍ୟ ଭାରତୀୟ ସମସ୍ୟାର ନିରାକରଣ ନିମନ୍ତେ ଅସମର୍ଥ । ଏହି ଅସମର୍ଥତାର ଦୂରୀକରଣ ନିମନ୍ତେ ଡ଼ଃ.ଭି.ଏସ୍. ସୁଖଠନକର ମହାଭାରତର ଆଦ୍ୟରେ ବିସ୍ତୃତ ଭୂମିକା ଲେଖି ଏହି ସବୁ ସମସ୍ୟାର ଆଲୋଚନା କଲେ । ସେହି ସବୁ ସମସ୍ୟା ଓ ତତ୍ସମ୍ବନ୍ଧୀୟ ଆଲୋଚନାର ନାମ ହେଲା *Textual Criticism* ବା ପାଠାଲୋଚନା ।

ପରବର୍ତ୍ତୀ ସମୟରେ ପ୍ରାଚୀନ ଗ୍ରନ୍ଥରାଜି ପ୍ରତି ଆଗ୍ରହ ବୃଦ୍ଧି ପାଇବା ଫଳରେ ଏ ସବୁର ସଂଗ୍ରହ ଓ ସଂରକ୍ଷଣ ପାଇଁ ଭାରତର ବିଭିନ୍ନ ପ୍ରାନ୍ତରେ ବହୁ ଗବେଷଣା ଅନୁଷ୍ଠାନ ପ୍ରତିଷ୍ଠିତ ହେଲା । ବହୁ ସୁଯୋଗ୍ୟ ବିଦ୍ୱାନ ଏହି ସବୁ ଅନୁଷ୍ଠାନର ଦାୟିତ୍ୱରେ ରହି ସହସ୍ରାଧିକ ଗ୍ରନ୍ଥ ସଂଗ୍ରହ କଲେ । ଏହିସବୁ ପ୍ରାଚୀନ ଗ୍ରନ୍ଥ ଭାରତର ଅତୀତ ଇତିହାସ, ସମାଜ, ସାହିତ୍ୟ, ସଂସ୍କୃତି ଓ ଜୀବନଧାରା ଉପରେ ବିଶେଷ ଆଲୋକପାତ କରୁଥିବାରୁ ସେ ସବୁର ସଂପାଦନା ମଧ୍ୟ ଆବଶ୍ୟକ ହେଲା । ଏହି କ୍ରମରେ ଭାରତରେ ପାଠାଲୋଚନା ଏକ ସୁବ୍ୟବସ୍ଥିତ ବିଜ୍ଞାନ ଭାବେ ପ୍ରତିଷ୍ଠିତ ହୋଇ ଆଦୃତ ହେଲା ।

—※—

# ପାଣ୍ଡୁଲିପି

ମାନବ ଜାତିର ଅଧିକାଂଶ ଇତିହାସ ଆଜି ବିସ୍ମୃତିର ଅତଳ ଗର୍ଭରେ ଲୀନ ହୋଇଯାଇଛି । ଏହାର କାରଣ ହେଉଛି ଅତୀତ ଇତିହାସକୁ ବାନ୍ଧି ରଖିବା ପାଇଁ ମନୁଷ୍ୟ ପାଖରେ ସେତେବେଳେ କୌଣସି ଲିପି ନଥିଲା । କେବଳ ସେତିକି ନୁହେଁ ଶ୍ରାବ୍ୟ ଓ ଦୃଶ୍ୟ ସାଧନା ମାଧ୍ୟମରେ ସେ ନିଜର ଭାବ ଆଦାନ ପ୍ରଦାନ କରୁଥିଲା । ଫଳରେ ଏ ସମସ୍ତ ଘଟଣା ମନୁଷ୍ୟର ସ୍ମୃତି ଏବଂ ବିବେକର ପ୍ରବାହରେ ପ୍ରବାହିତ ହେବାକୁ ବାଧ୍ୟ ହେଉଥିଲା । କାଳକ୍ରମେ ମନୁଷ୍ୟ ଲେଖନ କଳାର ଆବିଷ୍କାର କରିବା ସଙ୍ଗେ ସଙ୍ଗେ ଲିପିବଦ୍ଧ ସାମଗ୍ରୀ ମଧ୍ୟ ଅନେକ ରୂପରେ ପରିଦୃଷ୍ଟ ହେଲା ।

ଆଧୁନିକ ଯୁଗରେ ମନୁଷ୍ୟ ଯେପରି କାଗଜରେ ଲେଖୁଛି, ମାନବ ସଭ୍ୟତାର ପ୍ରାରମ୍ଭିକ ଅବସ୍ଥାରେ ଏହି ଲେଖନ କର୍ମ ଇଟା, ପଥର ଆଦି ଉପରେ ହେଉଥିଲା । କାଳକ୍ରମେ ଲେଖନ କର୍ମ ଚମଡ଼ା, ତାଳପତ୍ର, ଭୂର୍ଜପତ୍ର, ତାମ୍ରପତ୍ର ଓ ଅନ୍ୟାନ୍ୟ ଧାତବ ପତ୍ରରେ ମଧ୍ୟ କରାଗଲା । ଐତିହାସିକ ତଥା ଗବେଷକମାନେ ଇଟା, ପଥର ଆଦି ଉପରେ ଖୋଦିତ ଲେଖାକୁ ଶିଳାଲେଖ ନାମରେ ନାମିତ କରିବା ସଙ୍ଗେ ସଙ୍ଗେ ତାମ୍ରପତ୍ରରେ ଖୋଦିତ ଲେଖାକୁ ତାମ୍ରଲେଖ ନାମରେ ନାମିତ କଲେ ।

ଏହି ଲେଖାଗୁଡ଼ିକୁ ଅଭିଲେଖ ନାମରେ ମଧ୍ୟ ନାମିତ କରାଗଲା । ଏହାର ବିଷୟବସ୍ତୁ ବିଶେଷ କରି ଦାନପତ୍ର, ଆଜ୍ଞାପତ୍ର, ପ୍ରଶଂସାପତ୍ର ଓ ସ୍ମାରକପତ୍ର ଆଦିକୁ ନେଇ ରଚିତ ମନ୍ତ୍ର । କିନ୍ତୁ ଏ ସମସ୍ତଙ୍କୁ ବାଦ୍ ଦେଲେ ପୁସ୍ତକଆକାରରେ ଯାହା ତାଳପତ୍ର, ଭୂର୍ଜପତ୍ର ଆଦିରେ ଲେଖାଗଲା ତାହାକୁ 'ପାଣ୍ଡୁଲିପି' ନାମରେ ପରିଚିତ ହେଲା ।

ଲିପିର ବିକାଶ ସଙ୍ଗେ ସଙ୍ଗେ ଏହି ପାଣ୍ଡୁଲିପି ମଧ୍ୟ କ୍ରମେ ବିକାଶ ଲାଭ କଲା । ଏହି ବିକାଶ କ୍ରମ ମଧ୍ୟରେ ମନୁଷ୍ୟ ତାର ଜୀବନର ବିବିଧ

ସ୍ମରଣୀୟ ଘଟଣା, ବିଚାର ଓ ଭାବନାକୁ ଲିପିବଦ୍ଧ କରି ରଖିବା ନିମନ୍ତେ ପ୍ରାରମ୍ଭିକ ଉଦ୍ୟମ କଲା । ଫଳରେ ମନୁଷ୍ୟର ସମସ୍ତ ସାହିତ୍ୟିକ, ସାଂସ୍କୃତିକ, କଳାତ୍ମକ, ଐତିହାସିକ, ରାଜନୈତିକ, ସାମାଜିକ ତଥା ଜ୍ଞାନ ଦର୍ଶନ ସମ୍ବନ୍ଧୀୟ ବିଭିନ୍ନ ବିଷୟ ପାଣ୍ଡୁଲିପିରେ ଲିପିବଦ୍ଧ ହେଲା । ଯଦିଓ ପାଣ୍ଡୁଲିପିର ମୂଳ ଅର୍ଥ ହେଉଛି ଲେଖା ଆଦିର ପ୍ରଥମ ରୂପ ତଥାପି ସାମ୍ପ୍ରତିକ କାଳରେ ପାଣ୍ଡୁଲିପି କହିଲେ ସମସ୍ତ ପ୍ରକାର ହସ୍ତଲିଖିତ ସାମଗ୍ରୀକୁ ହିଁ ବୁଝାଇଲା ।

ଇଂରାଜୀରେ ଏହି ପାଣ୍ଡୁଲିପିର ପର୍ଯ୍ୟାୟବାଚୀ ଶବ୍ଦ ରୂପେ *'Manuscript'*କୁ ଗ୍ରହଣ କରାଯାଏ । ଏହି ଶବ୍ଦଟି ଲାଟିନ୍‌ର *'Manu Script'* ଶବ୍ଦରୁ ଉତ୍ପନ୍ନ । ଏହାକୁ ହସ୍ତଲେଖା ବୋଲି ମଧ୍ୟ ଅର୍ଥ କରାଯାଏ ।

ପ୍ରତ୍ନତାତ୍ତ୍ୱିକ ଅନୁସାରେ *'Manuscript'* କହିଲେ ପଥର, ଧାତୁ, କାଷ୍ଠ, ମାଟି, ଲୁଗାପଟବସ୍ତ୍ର, ଗଛର ବଲ୍‌କଲ, ପତ୍ର ଏବଂ ପ୍ରସ୍ତୁତ କରାଯାଇଥିବା ଛେଳି, ମେଣ୍ଢା, ବାଛୁରୀ ଆଦିଙ୍କ ଚର୍ମରେ ଲିଖିତ ପ୍ରାଚୀନ ଲେଖାକୁ ବୁଝାଏ । (୧)

କେତେକ ଛାପାଖାନା (*Printing press*) ରେ ମୁଦ୍ରଣ ନିମନ୍ତେ ପ୍ରସ୍ତୁତ ହାତଲେଖା ପୁସ୍ତକର ଅନ୍ତିମ ରୂପକୁ ମଧ୍ୟ ପାଣ୍ଡୁଲିପି ରୂପେ ଗ୍ରହଣ କରନ୍ତି । ପଣ୍ଡିତ ଉଦୟ ଶଙ୍କର ଶାସ୍ତ୍ରୀ ଏହି ଅର୍ଥକୁ ସ୍ୱୀକାର କଲେ ମଧ୍ୟ ପ୍ରାଚୀନ କାଳରେ କାଠପଟାରେ ବା ଚଟାଣରେ ଖଡ଼ି (ପାଣ୍ଡୁ ବା ଚକ୍) ଦ୍ୱାରା ହାତରେ ଲେଖା ଯାଉଥିବା ବିଷୟକୁ ଅନ୍ୟତ୍ର ଉତାରି ନେବାକୁ ବା

---

(୧) *'In archaeology a manuscript is any early writing on stone, metal, wood, clay, linen, bark and leaves of trees and prepared skins of animals, such as goats sheep and claves.'*

*(The American People's Encyclopaedia, P. 175.)*

ନକଲ କରିବାକୁ ପାଣ୍ଡୁଲିପି ରୂପେ ଗ୍ରହଣ କରିଛନ୍ତି । (୨) କିନ୍ତୁ ହସ୍ତଲେଖ ଓ ପାଣ୍ଡୁଲିପି ମଧ୍ୟରେ କେତେକ ପ୍ରଭେଦ ଦେଖାଯାଏ । ହସ୍ତଲେଖର ଅର୍ଥ ପାଣ୍ଡୁଲିପି ଅର୍ଥଠାରୁ ଅଧିକ ବିସ୍ତୃତ । କାରଣ ହସ୍ତଲେଖ କହିଲେ ହାତରେ ଲେଖାଯାଇଥିବା ସମସ୍ତ ବିଷୟକୁ ବୁଝାଉଥିବାବେଳେ ପାଣ୍ଡୁଲିପି କହିଲେ କେବଳ ଗ୍ରନ୍ଥ ସହିତ ସମ୍ବନ୍ଧିତ ଲେଖନକୁ ବୁଝାଏ । ଗ୍ରନ୍ଥ ସହିତ ସମ୍ବନ୍ଧିତ ଅର୍ଥକୁ ନେଇ ଆଲୋଚନା କଲେ ପାଣ୍ଡୁଲିପିର ଅର୍ଥସୀମା ଭୂର୍ଜପତ୍ର, ତାଳପତ୍ର, କାଷ୍ଠଫଳକ, କାର୍ପାସପଟ୍ଟ, ଧାତୁଖଣ୍ଡ ଓ ପାଷାଣ ଠାରୁ ଆରମ୍ଭ କରି କାଗଜ ପର୍ଯ୍ୟନ୍ତ ବିସ୍ତୃତ । (୩) ଓଡ଼ିଶାରେ ଏସମସ୍ତ ପର୍ଯ୍ୟାୟର ପାଣ୍ଡୁଲିପି ପରିଦୃଷ୍ଟ ନହେଲେ ମଧ୍ୟ ଓଡ଼ିଶା ବାହାରେ ପାଣ୍ଡୁଲିପି ରୂପେ ଏଗୁଡ଼ିକ ଦେଖିବାକୁ ମିଳେ । ଓଡ଼ିଶାରେ ପାଣ୍ଡୁଲିପି କହିଲେ ମୁଖ୍ୟତଃ ତାଳପତ୍ର ବା ଭୂର୍ଜପତ୍ର, କାଗଜରେ ଲିଖିତ ସାମଗ୍ରୀକୁ ବୁଝାଏ ।



୨) ଭାରତୀୟ ସାହିତ୍ୟ, ଜାନୁୟାରୀ, ୧୯୫୯, ପୃ. ୧୨୦

୩) ପାଣ୍ଡୁଲିପି ସମ୍ପାଦନା କଳା, ଡଃ. ରାମ ଗୋପାଳ ଶର୍ମା ଦିନେଶ, ୧୯୭୯, ପୃ. ୧୧

# ପାଣ୍ଡୁଲିପିର ପ୍ରକାର ଭେଦ

ଡଃ. ଏସ୍. ଏମ୍. କାତ୍ରେ ପ୍ରାଚୀନ କାଳରେ ପ୍ରସ୍ତୁତ ହସ୍ତଲେଖ ସାମଗ୍ରୀକୁ ଯେଉଁ ଦୃଷ୍ଟିଭଙ୍ଗୀ ନେଇ ପାଣ୍ଡୁଲିପି ରୂପେ ସ୍ୱୀକାର କରିଛନ୍ତି, ସେଥିରୁ ଜଣାଯାଏ ଯେ ପାଣ୍ଡୁଲିପି ବିଭିନ୍ନ ପ୍ରକାରର ହୋଇପାରେ । ସେହି ବିଭିନ୍ନ ପ୍ରକାର ମଧ୍ୟରେ ପାଣ୍ଡୁଲିପିକୁ ମୁଖ୍ୟତଃ ଧାତୁ, ପାଷାଣ, ଚର୍ମ, ବୃକ୍ଷାଂଶ, ବସ୍ତ୍ର ଆଦି ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ ।

ଧାତୁ ନିର୍ମିତ ପାଣ୍ଡୁଲିପି ମଧ୍ୟରେ ତାମ୍ର ଆଦି ବିଭିନ୍ନ ଧାତବ ପଦାର୍ଥ ଉପରେ ଖୋଦିତ ବିଷୟକୁ ଗ୍ରହଣ କରାଯାଏ । ପୂର୍ବେ ବିଭିନ୍ନ ରାଜା ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ବିଭିନ୍ନ ପ୍ରକାର ଦାନପତ୍ର, ଆଜ୍ଞାପତ୍ର, ପ୍ରଶଂସାପତ୍ର ଆଦିକୁ ଏହି ଧାତବ ପଦାର୍ଥ ଉପରେ ଖୋଦନ କରି ବ୍ୟକ୍ତି ବିଶେଷଙ୍କୁ ବା ଧର୍ମାନୁଷ୍ଠାନମାନଙ୍କୁ ପ୍ରଦାନ କରୁଥିଲେ । ତେଣୁ ଏସବୁକୁ ମଧ୍ୟ କେତେକ ଆଲୋଚକ ହସ୍ତଲେଖ ରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପାଣ୍ଡୁଲିପି ନାମରେ ନାମିତ କରିଛନ୍ତି ।

ଧାତୁ ନିର୍ମିତ ପାଣ୍ଡୁଲିପି ଭଳି ପାଷାଣରେ ଖୋଦିତ ବିଭିନ୍ନ ଘଟଣାକୁ ମଧ୍ୟ କେତେକ ଆଲୋଚକ ପାଣ୍ଡୁଲିପି ରୂପେ ଗ୍ରହଣ କରିଛନ୍ତି । ଏହାକୁ ଶିଳାଲେଖ ନାମରେ ମଧ୍ୟ ନାମିତ କରାଯାଏ । ଏଥିରେ ମଧ୍ୟ ପୂର୍ବୋକ୍ତ ଭଳି ଆଜ୍ଞାପତ୍ର, ଦାନପତ୍ର, ଆଦେଶନାମା ଆଦି ବିଭିନ୍ନ ବୃତ୍ତାନ୍ତ ପରିଦୃଷ୍ଟ ହୁଏ । ଭାରତର ଉତ୍ତର ପଶ୍ଚିମୀ ପ୍ରଦେଶରେ ଇଟାରେ ଖୋଦିତ ବୌଦ୍ଧ ସୂତ୍ର ଦେଖିବାକୁ ମିଳେ । (୧) ଓଡ଼ିଶାରେ ଶିଳା ଉପରେ ଖୋଦିତ ସଂସ୍କୃତ, ପ୍ରାକୃତ, ଓଡ଼ିଆ ଓ ପାରସୀ ଅଭିଲେଖ ସବୁ ଦେଖିବାକୁ ମିଳିଥାଏ । ଏ ଦୃଷ୍ଟିରୁ ଓଡ଼ିଶା ବିଶେଷ ସମୃଦ୍ଧ ।

---

୧) ଭାରତୀୟ ପାଠାଲୋଚନାର ଭୂମିକା-ଡଃ. ଉଦୟ ନାରାୟଣ ତିୱାରୀ, ୧୯୭୧ ପୃ-୯ ।

କେତେକ ଅଞ୍ଚଳରେ ଛେଳି, ମେଣ୍ଢା ଓ ବାଛୁରୀ ଆଦି ବିଭିନ୍ନ ଜୀବ-ଜନ୍ତୁର ଚର୍ମକୁ ଲେଖନ ଉପଯୋଗୀ କରି ଲେଖିବା ନିମନ୍ତେ ବ୍ୟବହାର କରନ୍ତି । ସୁବନ୍ଧୁ କୃତ 'ବାସବଦତ୍ତା'ରେ ଲେଖିବାନିମନ୍ତେ ଚମଡ଼ାର ଉପଯୋଗ ହେଉଥିବା କଥା ବର୍ଣ୍ଣିତ ଥିଲେ ମଧ୍ଯ ଚମଡ଼ାକୁ ଧାର୍ମିକ ଅପବିତ୍ରତା ରୂପେ ସ୍ବୀକାର କରାଯାଉଥିବାରୁ ଏହି ଅନୁମାନକୁ ଗ୍ରହଣ କରିବା କଷ୍ଟକର ମନେ ହୁଏ । କିନ୍ତୁ ଭାରତ ବାହାରେ ଚୀନ-ତୁର୍କୀ ସ୍ଥାନଆଦିରେ ଚମଡ଼ା ଲିଖିତ ପାଣ୍ଡୁଲିପି ଦେଖିବାକୁ ମିଳେ । (୨)

ପାଣ୍ଡୁଲିପି ରୂପେ ବୃକ୍ଷର ବିଭିନ୍ନ ଅଂଶକୁ ମଧ୍ଯ ଗ୍ରହଣ କରାଯାଏ । ଏହି ବିଭିନ୍ନ ଅଂଶ ମଧ୍ଯରେ ବୃକ୍ଷର ବଳ୍କଳ, ପତ୍ର ଓ କାଷ୍ଠ ଆଦି ଅନ୍ୟତମ । ବୃକ୍ଷର ବଳ୍କଳ ରୂପେ ଭୂର୍ଜପତ୍ର, ପତ୍ର ରୂପେ ତାଳପତ୍ର ଓ ବାଉଁଶ ପତ୍ର, ବିଭିନ୍ନ କାଷ୍ଠ ପଟାର ପାଣ୍ଡୁଲିପି ଦେଖିବାକୁ ମିଳେ । ଭୂର୍ଜପତ୍ରକୁ ଲେଖନ ସାମଗ୍ରୀ ରୂପେ ସିକନ୍ଦରଙ୍କ ଆକ୍ରମଣ ସମୟରେ ପ୍ରଥମେ ପ୍ରୟୋଗ କରାଯାଇ-ଥିବାର ସୂଚନା ମିଳେ । ତାଳପତ୍ରକୁ ଏହାର ବହୁପରେ ଲେଖନ ସାମଗ୍ରୀ ରୂପେ ପ୍ରୟୋଗ କରାଗଲେ ମଧ୍ଯ ବିନୟ ପିଟକ ତଥା ବିଭିନ୍ନ ଜାତକ ମଧ୍ଯରେ କାଷ୍ଠ ପଟାକୁ ଲେଖନ ସାମଗ୍ରୀ ରୂପେ ଉପଯୋଗ କରାଯାଉଥିବା କଥା ଉଲ୍ଲେଖ ରହିଛି । ଲିଖନ ସାମଗ୍ରୀର ବିକାଶକ୍ରମରେ ଏଗୁଡ଼ିକର ଯୋଗଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହୋଇପାରିଛି । ଓଡ଼ିଶାରେ ତାଳପତ୍ରକୁ ହିଁ ବିଶେଷ ଭାବେ ବ୍ୟବହାର କରାଯାଇଥିଲା । ଏ ଦେଶର ସମସ୍ତ ଅତୀତ କାବ୍ୟ, ପୁରାଣ, ଚଉତିଶା, ଚଉପଦୀ ଓ ଅନ୍ୟାନ୍ୟ ପ୍ରକାର ଲେଖା ତାଳପତ୍ରରେ ଏକ ଲୌହ ଲେଖନୀ ଦ୍ୱାରା ଲିଖିତ । ଏହି ପାଣ୍ଡୁଲିପି ଓଡ଼ିଶାରେ ପୋଥି ବା ଖେଦା-ନାମରେ ପରିଚିତ ।

ପ୍ରାଚୀନ କାଳରେ ବିଭିନ୍ନ କାର୍ପାସ ବସ୍ତ୍ରକୁ ଲେଖନ ସାମଗ୍ରୀରୂପେ ପ୍ରୟୋଗ କରାଯାଉଥିବାର ଦେଖିବାକୁ ମିଳେ । ବିଭିନ୍ନ ରାଜକୀୟ ପତ୍ର ଓ ଆଦେଶନାମା ଆଦି ଏହି କାର୍ପାସ ବସ୍ତ୍ରରେ ପ୍ରଦାନ କରାଯାଉଥିଲା । ଡଃ.କାତ୍ରେ

(୨) ଭାରତୀୟ ପାଠାଲୋଚନାର ଭୂମିକା, ଅନୁ. ଡଃ. ଉଦୟନାରାୟଣ ତିୱାରୀ, ୧୯୭୧, ଭୂମିକା ପୃ. ୭-୮

ଉଲ୍ଲେଖ କରିଛନ୍ତି ଯେ "ଶ୍ରୀବୂଲ୍‌ହରଙ୍କୁ ଜୈସଲମେରରେ ଗୋଟିଏ ରେଶମୀ ବସ୍ତ୍ରର ଏକ ଖଣ୍ଡାଂଶ ମିଳିଥିଲା ଯେଉଁଥିରେ କାଳିଦ୍ୱାରା ଜୈନସୂତ୍ର ସୂଚୀବଦ୍ଧ କରାଯାଇଥିଲା । ଶ୍ରୀଷ୍ଟାଇନ୍ ସ୍ୱାମେନର ଧ୍ୱଂସାବଶେଷ ମଧ୍ୟରୁ ଖରୋଷ୍ଠୀ ଲିପିରେ ଲିଖିତ ଏକ ରେଶମ ବସ୍ତ୍ର ପାଇଥିଲେ । (୩)

ପ୍ରାଚୀନ କାଳରେ ଭାରତ ତଥା ଭାରତ ବାହାରେ ପାଣ୍ଡୁଲିପି ରୂପେ ଉପରୋକ୍ତ ସାମଗ୍ରୀଗୁଡ଼ିକ ବ୍ୟବହାର କରାଗଲେ ମଧ୍ୟ କାଗଜର ଆବିଷ୍କାର ପରେ କାଗଜକୁ ପାଣ୍ଡୁଲିପି ସାମଗ୍ରୀ ଭାବେ ବ୍ୟବହାର କରାଯାଉଅଛି । ତାମ୍ର ଓ ପାଷାଣ ଆଦି କଠିନପଦାର୍ଥ ଉପରେ ପ୍ରସ୍ତୁତ ଲେଖନକୁ ଦୀର୍ଘସ୍ଥାୟୀ ରୂପେ ରଖିବା ଉଦ୍ଦେଶ୍ୟରେ ଲେଖନ ସାମଗ୍ରୀ ଭାବେ ବ୍ୟବହାର ପ୍ରଥମେ କରାଗଲା । ଏଗୁଡ଼ିକରେ ଲେଖିବା ସମୟ ସାପେକ୍ଷ ତଥା କଷ୍ଟସାଧ୍ୟ ହେବାରୁ ପରବର୍ତ୍ତୀ ସମୟରେ ଚମଡ଼ା, ବୃକ୍ଷର ଅଂଶବିଶେଷ ଓ କାର୍ପାସ ବସ୍ତ୍ର ଆଦିକୁ ଗ୍ରହଣ କରାଗଲା । ଓଡ଼ିଶାରେ ଚମଡ଼ାକୁ ଛାଡ଼ି ଅନ୍ୟାନ୍ୟ ସମସ୍ତ ଲେଖନ ସାମଗ୍ରୀ ରୂପେ ପ୍ରୟୋଗ କରାଯାଇ ଥିବାର ଦେଖିବାକୁ ମିଳେ । ଏହି ଲେଖନ ସାମଗ୍ରୀରେ ଲିଖିତ ବସ୍ତୁକୁ କେତେକ ଅନୁଲିପିକାର ଲିପିବଦ୍ଧ କରି ପ୍ରଚାର ତଥା ପ୍ରସାର ପାଇଁ ପରବର୍ତ୍ତୀ ସମୟରେ ଉଦ୍ୟମ କରିଛନ୍ତି ।

—*—

୩) ସଂକ୍ଷିପ୍ତ ପାଠାଲୋଚନାର ଭୂମିକା—ପୃ-୬

# ପାଣ୍ଡୁଲିପିର ଅନୁଲିପିକାର

ବିଭିନ୍ନ ପାଣ୍ଡୁଲିପିକୁ ଅନୁଧ୍ୟାନ କଲେ ତନ୍ମଧ୍ୟରେ ଥିବା 'ପୁଷ୍ପିକା'ରେ ନିମ୍ନୋକ୍ତ ଶ୍ଳୋକଟି ଦେଖିବାକୁ ମିଳେ ।

"ଗ୍ରନ୍ଥକର୍ତ୍ତା ସ୍ୱୟଂ ବ୍ୟାସୋ ଲେଖକସ୍ତୁ ବିନାୟକଃ
ତୟୋର୍ବିଚଳିତା ବୁଦ୍ଧି ମନୁଷ୍ୟାଣାଂ ଚ କା କଥା ।"

'ଗ୍ରନ୍ଥକର୍ତ୍ତା ସ୍ୱୟଂ ବ୍ୟାସଦେବ ଓ ତାଙ୍କର ଲିଖନକାର ବିନାୟକ ହେଲେ ମଧ୍ୟ ତାଙ୍କର ବୁଦ୍ଧି ବିଚଳିତ ହୋଇଥିଲା, ତେଣୁ ମନୁଷ୍ୟ କଥା କାହିଁକି ?' ଅର୍ଥାତ ଗ୍ରନ୍ଥକର୍ତ୍ତା ଓ ଲେଖନକାର ଏକ ଏବଂ ଅଭିନ୍ନ ବ୍ୟକ୍ତି ନୁହଁନ୍ତି । ତେଣୁ ଗ୍ରନ୍ଥକର୍ତ୍ତାର ଭାବଧାରା ଓ ଲେଖନକାରର ଭାବଧାରା କେବେ ହେଲେ ଏକ ହୋଇ ନଥିବାରୁ ବେଳେ ବେଳେ ଲେଖନ ସମୟରେ ତ୍ରୁଟି ରହିପାରେ । କାରଣ ଯଦି ସଂସ୍କୃତ ଅଭିଜ୍ଞ ଗ୍ରନ୍ଥକାରର ଲେଖନକାର ବା ଅନୁଲିପିକାର ବା ନକଲକାର ସଂସ୍କୃତ ଅନଭିଜ୍ଞ ବ୍ୟକ୍ତି ହୋଇଥାଏ ତେବେ ଲିଖନ ସମୟରେ ପ୍ରମାଦ ପରିଲକ୍ଷିତ ହେବାର ସମ୍ଭାବନା ରହିଛି । ଠିକ୍ ସେହିପରି ସଂସ୍କୃତ ଅନଭିଜ୍ଞ ବ୍ୟକ୍ତିର ଲିଖନକାର ଯଦି ସଂସ୍କୃତ ଅଭିଜ୍ଞ ବ୍ୟକ୍ତି ହୁଏ ତେବେ ମଧ୍ୟ କେତେକ ତ୍ରୁଟି ଦେଖାଯିବା ସ୍ୱାଭାବିକ୍ । ଏହି ଦୃଷ୍ଟିରୁ ବିଚାର କଲେ ଲେଖନକାର ବା ଅନୁଲିପିକାରଙ୍କୁ ସଂସ୍କୃତ ଅଭିଜ୍ଞ ଓ ସଂସ୍କୃତ ଅନଭିଜ୍ଞ ରୂପେ ଦୁଇଭାଗରେ ବିଭକ୍ତ କରାଯାଇପାରେ । ସଂସ୍କୃତ ଅଭିଜ୍ଞ ଗ୍ରନ୍ଥକାରର ଯଦି ସଂସ୍କୃତ ଅନଭିଜ୍ଞ ଅନୁଲିପିକାର ହୁଏ ତେବେ ଅନୁଲିପି ପ୍ରସ୍ତୁତ ସମୟରେ ବର୍ଣ୍ଣ, ବାକ୍ୟ ଓ ବ୍ୟାକରଣ ଅଶୁଦ୍ଧିଯୁକ୍ତ ପ୍ରମାଦ ଦେଖିବାକୁ ମିଳିପାରେ ।

ଓଡ଼ିଆ ଭାଷାରେ ରଚିତ ବିଭିନ୍ନ ପାଣ୍ଡୁଲିପିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ପ୍ରାଚୀନ କାଳରେ ପୋଥି ଲେଖିବା ଏକ ସମ୍ମାନଜନକ ବ୍ୟବସାୟ ଥିଲା । ତେଣୁ ବିଭିନ୍ନ ଜାତିର ଲୋକମାନେ ପୋଥି ଲେଖିବା ପାଇଁ ବିଶେଷ ଆଗ୍ରହ ପ୍ରଦର୍ଶନ କରୁଥିଲେ । ଏମାନଙ୍କ ମଧ୍ୟରେ ବ୍ରାହ୍ମଣ, କରଣ,

ବ୍ରାହ୍ମଣ, ଓଝା, ଜ୍ୟୋତିଷ, ଯୋଗୀ, କେଉଟ, ତେଲି, ଗୁଡ଼ିଆ ଓ କଂସାରି ଆଦି ଜାତିର ଲୋକ ଅନ୍ୟତମ । ଏପରିକି କନ୍ଧ, ଗାଉଡ଼ିଆ ଆଦି ଆଦିବାସୀ-ମାନେ ମଧ୍ୟ ପୋଥି ଲେଖିଥିବାର ନିଦର୍ଶନ ରହିଛି । (୧) କେବଳ ସେତିକି ନୁହେଁ କେତେକ ପୋଥିର ଲିଖନକାର ରୂପେ ନଦିବ ଖାଁ ନାମକ ଜଣେ ମୁସଲମାନ ଥିବାର ଜଣାଯାଏ । (୨)

ଏଥିରୁ ଜଣାଯାଉଅଛି ଯେ ଓଡ଼ିଆ ସାହିତ୍ୟର ଉନ୍ନତି କଲ୍ପେ ତଥା ସମୃଦ୍ଧି ନିମନ୍ତେ ବିଭିନ୍ନ ଜାତି ତଥା ସଂପ୍ରଦାୟର ଅନୁଲିପିକାର ସମୟାନୁକ୍ରମେ ଯେଉଁ ସବୁ ସୃଷ୍ଟି ସଂପଦକୁ ସାଇତି ଯାଇଛନ୍ତି ତନ୍ମଧ୍ୟରେ ସେମାନଙ୍କ ଜାଣିତରେ ବା ଅଜାଣତରେ କେତେକ ପ୍ରମାଦ ରହିଥିବାର ସମ୍ଭାବନା ରହିଛି । ଏହିସବୁ ପ୍ରମାଦ ଗୁଡ଼ିକର ଦୂରୀକରଣ କରି ମୂଳପାଠ ନିକଟରେ ପହଞ୍ଚି ତାର ବିଷୟର ଆଲୋଚନା କରିବା ପାଠାଲୋଚନାର ମୂଳ ଉଦ୍ଦେଶ୍ୟ ।



## ଅନୁଲିପିକାରର ସମସ୍ୟା

ରାଜଶେଖର ତାଙ୍କର କାବ୍ୟ ମୀମାଂସା ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି 'କବିମାନେ ନିଜ ଗ୍ରନ୍ଥର ସୁରକ୍ଷା ନିମନ୍ତେ କେତେକ ପ୍ରତିଲିପି କରିନେବା ଦରକାର ।' ଏହି ଏକ ଚିନ୍ତାଧାରା ଦ୍ୱାରା କବିମାନେ ପ୍ରଭାବିତ ହୋଇ ସ୍ୱରଚିତ ରଚନାର ଏକାଧିକ ଅନୁଲିପି ନିଜ ଜୀବନ କାଳ ମଧ୍ୟରେ ପ୍ରସ୍ତୁତ କରାଇଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇନପାରେ । ଏପରିକି କେତେକ କବିଙ୍କର ସୁପ୍ରସିଦ୍ଧ ରଚନା ଦ୍ୱାରା ଆକୃଷ୍ଟ ହୋଇ ବିଭିନ୍ନ ଅଞ୍ଚଳର ରାଜା,

---

୧) ବୃହତ ଇଚ୍ଛାବତୀ—ସଂପାଦକ : କେଦାରନାଥ ମହାପାତ୍ର, ଭୂମିକା ଦ୍ରଷ୍ଟବ୍ୟ

୨) ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପୋଥି ନଂ OL ୧୮୭୨ ରୁ ୧୮୭

ମହାରାଜା ବା ସମ୍ଭ୍ରାନ୍ତ ବ୍ୟକ୍ତି କିମ୍ବା ଗୁଣୀ ବିଦ୍ୱାନମାନେ ଗୋଟିଏ ଗୋଟିଏ ଅନୁଲିପି ପ୍ରସ୍ତୁତ କରାଇଥିବାର ଅନୁମାନ କରାଯାଇପାରେ । ତେଣୁ ଏହି କାରଣରୁ କବିମାନଙ୍କର ଏକାଧିକ ରଚନାବଳୀର ଅନୁଲିପି ବିଭିନ୍ନ ଅଞ୍ଚଳରେ ଦେଖିବାକୁ ମିଳେ ।

କବିର ଗ୍ରନ୍ଥକୁ ଅନୁସରଣ କରି ଏହିସବୁ ଅନୁଲିପି ପ୍ରସ୍ତୁତ ହୋଇଥିଲେ ମଧ୍ୟ ଅନୁଲିପିକାରଙ୍କ କେତେଗୁଡ଼ିଏ ସମସ୍ୟା ଲାଗି ମୂଳରଚନାଠାରୁ ଏହା କ୍ରମଶଃ ଦୂରେଇଯାଏ । ତେଣୁ ଗ୍ରନ୍ଥକର୍ତ୍ତାର ଅସ୍ପଷ୍ଟ ରୂପ ନକଲକାର ବା ଅନୁଲିପିକାର ଦ୍ୱାରା କ୍ରମଶଃ ବିକୃତ ହୋଇଯାଇଥାଏ । ଯଦି କୌଣସି କ୍ଷେତ୍ରରେ କେତେକ ଅପରିହାର୍ଯ୍ୟ କାରଣ ବଶତଃ ଗ୍ରନ୍ଥକର୍ତ୍ତା ନିଜେ ନଲେଖି କୌଣସି ଅନୁଲିପିକାରର ସାହାଯ୍ୟ ନେଇଥାଏ ତେବେ ସେଥିରେ ମଧ୍ୟ କେତେକ ପ୍ରମାଦ ରହିଥିବାର ସମ୍ଭାବନା ରହିଥାଏ । ପ୍ରାଚୀନ କାଳରେ ବହୁ ଗ୍ରନ୍ଥକର୍ତ୍ତା ନିଜେ ନିଜ ଗ୍ରନ୍ଥର ମୂଳପାଠ ପ୍ରସ୍ତୁତ କରୁଥିଲେ । ତେଣୁ ପରବର୍ତ୍ତୀ ସମୟରେ ମୂଳଗ୍ରନ୍ଥର ପାଠଠାରୁ ଅନୁଲିପିକାରର ପାଠ ମଧ୍ୟରେ ଥିବା ପ୍ରଭେଦ ଅନୁଲିପିକାରର ନିମ୍ନୋକ୍ତ ସମସ୍ୟା ଲାଗି ସୃଷ୍ଟି ହୁଏ ।

୧) ଦୃଷ୍ଟି ଶକ୍ତି କମ୍ ବା ଅକ୍ଷର ଛୋଟ

ସମୟ ସମୟରେ ଅନୁଲିପିକାରର ଦୃଷ୍ଟି ଶକ୍ତି କମ୍ ହୋଇଥିଲେ କିମ୍ବା ମୂଳ ଅନୁଲିପିର ଅକ୍ଷର ଖୁବ୍ ଛୋଟ ଛୋଟ ହୋଇଥିଲେ, ଅନୁଲିପିକାର ତାହାକୁ ସ୍ପଷ୍ଟ ରୂପେ ପଢ଼ି ନପାରି ନିଜ ଅନୁମାନରୁ ଏକ ଶବ୍ଦର ପ୍ରୟୋଗ କରିଦିଏ ।

୨) ପ୍ରାଚୀନ ଶବ୍ଦକୁ ଠିକ୍ ନ ବୁଝିବା

ଅନୁଲିପିକାର ସମୟ ସମୟରେ ମୂଳଗ୍ରନ୍ଥରେ ଉଲ୍ଲେଖ ଥିବା ପ୍ରାଚୀନ ଶବ୍ଦକୁ ଠିକ୍ ରୂପେ ବୁଝି ନପାରି ଅନୁଲିପି ପ୍ରସ୍ତୁତ ସମୟରେ ଅନ୍ୟ ଏକ ଶବ୍ଦ ପ୍ରୟୋଗ କରିଥାଏ ।

୩) ଅସାବଧାନତା

ଅନୁଲିପିକାର ଅସାବଧାନତା ବଶତଃ ବା ବିଶେଷ ସତର୍କତା ଅବଲମ୍ବନ ନକରି ଅନୁଲିପି ପ୍ରସ୍ତୁତ କରିବା ଦ୍ୱାରା ମଧ୍ୟ କେତେକ ନୂତନ ସମସ୍ୟା ସୃଷ୍ଟି କରେ ।

୪) ଦ୍ରୁତ ଲିଖନର ପରିଣାମ

ସମୟ ସମୟରେ ଅନୁଲିପି ପ୍ରସ୍ତୁତକୁ କେତେକ ଅନୁଲିପିକାର ନିଜର ଜୀବିକା ରୂପେ ଗ୍ରହଣ କରୁଥିଲେ । ତେଣୁ ଶୀଘ୍ର ଲେଖିବା ପ୍ରବୃତ୍ତି ନେଇ ଏମାନେ ଅନୁଲିପି ପ୍ରସ୍ତୁତ କରିବା ସମୟରେ କେତେକ ପଦ ବା ଶବ୍ଦକୁ ଛାଡ଼ି ଦିବା ସ୍ୱାଭାବିକ ଥିଲା । ଯଦି ଗୋଟିଏ ପଦର ଶେଷରେ ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦ ଥାଏ ଓ ତା'ର ୪/୫ ଧାଡ଼ି ପରେ ଆଉ ଗୋଟିଏ ପଦ ଶେଷରେ ସେହି ଶବ୍ଦଟି ପୁନର୍ବାର ପ୍ରୟୋଗ ହୋଇଥାଏ ସେହି କ୍ଷେତ୍ରରେ ମଝିରେ ଥିବା ପଦଗୁଡ଼ିକୁ ଅନୁଲିପିକାର ଛାଡ଼ିଯାଏ । ଏହା ତା'ର ଅସାବଧାନତା ଓ ଶୀଘ୍ର ଲେଖିବା ପ୍ରବୃତ୍ତି ଦ୍ୱାରା ହିଁ ସୃଷ୍ଟି ହୁଏ ।

୫) ଶବ୍ଦକୁ ଅର୍ଥ ନବୁଝି ଲେଖିବା

ପ୍ରାଚୀନ କାଳରେ ଶବ୍ଦ ସବୁକୁ ଏକବ ପାଖକୁ ପାଖ ରଖି ଲେଖା ଯାଉଥିଲା । ଏପରିକି କେତେକ ସ୍ଥଳରେ ମୂର୍ଚ୍ଛାଚ୍ଛେଦର ପ୍ରୟୋଗ ମଧ୍ୟ ହେଉନଥିଲା । ଶବ୍ଦ ସବୁକୁ ସ୍ୱତନ୍ତ୍ର କରି ତା'ର ଅର୍ଥ ବୁଝି ଲେଖିବା ଅନୁଲିପିକାର ପକ୍ଷରେ ସମୟ ସାପେକ୍ଷ ଥିଲା । ତେଣୁ ଅକ୍ଷରକୁ ଦେଖି ଦେଖି ନକଲ କରି ଅନୁଲିପିକୁ ଏକ ବାସ୍ତବ ରୂପ ଦେବାକୁ ଅନୁଲିପିକାର ଆଗ୍ରହୀ ଥିଲେ ମଧ୍ୟ ସେଥିରେ ତା'ର କେତେକ ତ୍ରୁଟି ରହି ଯାଉଥିଲା ।

୬) ସ୍ୱାଧୀନ ଭାବରେ ଯୋଜନା ପାଇଁ ଆଗ୍ରହୀ

ଅନୁଲିପିକାର ଅନୁଲିପି ପ୍ରସ୍ତୁତ ସମୟରେ ନିଜର ସ୍ୱାଧୀନତାକୁ ପ୍ରବେଶ କରାଇବାକୁ ସମୟ ସମୟରେ ଆଗ୍ରହୀ ହୁଏ । ଏହି ଆଗ୍ରହରେ

ବଶବର୍ତ୍ତୀ ହୋଇ ସେ ବିବାହ ବର୍ଣ୍ଣନା, ନଗର ବର୍ଣ୍ଣନା, ମାତ୍ର ଉପଦେଶ ଓ ଯୁଦ୍ଧ ବର୍ଣ୍ଣନା ଆଦି ସମୟରେ ଆଉ କେତେକ ନୂତନ ପଦର ସଂଯୋଗ କରିଦିଏ । କେବଳ ସେତିକି ନୁହେଁ ଯେତେବେଳେ କବିର କୌଣସି ବର୍ଣ୍ଣନା ତା'ର ମନମୁତାବକ ହୁଏ ନାହିଁ ସେତେବେଳେ ସେ ଏହି ସମସ୍ୟା ମଧ୍ୟ ସୃଷ୍ଟି କରେ ।

୭) ଲେଖକ ଛାଡ଼ି ଯାଇଥିବା ଅନୁମାନ କରି

ସମସ୍ତ ସମୟରେ ଲେଖକ କିଛି ଛାଡ଼ି ଯାଇଥିବା ଅନୁମାନ କରି ଅନୁଲିପିକାର ସ୍ଥଳ ବିଶେଷରେ କିଛି ଅଂଶ ନୂତନ ଭାବେ ସଂଯୋଗ କରିଦିଏ । ଏହି ସଂଯୋଗ ମଧ୍ୟରେ ନୂତନ ଗଳ୍ପ ସଂଯୋଜନା, ଜନ୍ମ, ବିବାହାଦି ନିର୍ଦ୍ଦିଷ୍ଟ ସମୟରେ ବିଭିନ୍ନ କର୍ମକର୍ମାଣି ଓ ଧର୍ମାନୁଷ୍ଠାନ ଆଦି ବିଧାନର ସଂଯୋଗ, ଗୋଟିଏ ତାଲିକା ପ୍ରଦତ୍ତ ବିବରଣୀର ସଂଖ୍ୟା ବୃଦ୍ଧି ଆଦି ଅନ୍ୟତମ । କେବଳ ସେତିକି ନୁହେଁ ଅନୁଲିପିକାର ଉପାଖ୍ୟାନ ସମାପ୍ତି ବେଳେ ମଧ୍ୟ କେତେକ ନୂତନ ପଦ ସଂଯୋଜନା କରିଥାଏ । ପୁଣି ପ୍ରାଚୀନ ପୁରାଣରେ ଉପାଖ୍ୟାନ ସବୁର ନାମ ପ୍ରାୟ ରହୁ ନଥିଲା । ସବୁ ଉପାଖ୍ୟାନ ମିଶାଇ ଲେଖିବାଥିଲା ସାଧାରଣ ପଦ୍ଧତି । ପରେ ଏଥିରେ ଉପାଖ୍ୟାନର ନାମ ଦେଇ ଏହାକୁ ସ୍ୱତନ୍ତ୍ର କରି ମଧ୍ୟ ଲେଖାଗଲା ।

୮) ନିଜର ଅଜ୍ଞତା ହେତୁ

ଯଦି ଅନୁଲିପିକାର ଅଜ୍ଞ ହୋଇଥାଏ ତେବେ ସେ ଅନେକ ଶବ୍ଦ ପ୍ରକରଣକୁ ବୁଝି ନପାରି ବିକୃତ କରିଦିଏ । ଏହି ବିକୃତି ବିଶେଷ କରି ରାଜ୍ୟ, ନକ୍ଷତ୍ର ଓ ମୁନି ଋଷିଙ୍କ ନାମ ଥିବା ସ୍ଥାନରେ ହୋଇଥାଏ ।

୯) ପର୍ଯ୍ୟାୟବାଚୀ ଶବ୍ଦର ବ୍ୟବହାର

କେତେକ କ୍ଷେତ୍ରରେ ଅନୁଲିପିକାର କେତେଗୁଡ଼ିଏ ପର୍ଯ୍ୟାୟବାଚୀ ଶବ୍ଦ ପ୍ରୟୋଗ କରିବା ନିମନ୍ତେ ଆଗ୍ରହ ପ୍ରକାଶ କରୁଥିବାରୁ ଏଭଳି ପର୍ଯ୍ୟାୟବାଚୀ ଶବ୍ଦକୁ ଅଧିକରେ ପ୍ରୟୋଗ କରନ୍ତି । ଯଥା :— ଋଷି =

ମୂନ, ପ୍ରଭୁ = ବନ୍ଧୁ, ଦ୍ୱିଜ = ବିପ୍ର, ରାଜ୍ୟ = ରାଷ୍ଟ୍ର, କ୍ରୋଧ = କ୍ରୋଧିଂ, କୋପ, ନରେଶ୍ୱର = ନରୋତ୍ତମ, ନରାଧିପ ଅସଂଶୟ = ନଃସଂଶୟ ଆଦି ।

୧୦) ସହଜ ଶବ୍ଦର ପ୍ରୟୋଗ ଓ ଆଞ୍ଚଳିକ ପ୍ରଭାବ

ଅପ୍ରଚଳିତ ଓ ଅବୋଧ୍ୟ ସ୍ଥାନରେ ଅନୁଲିପିକାର କେତେକ ସହଜ ଶବ୍ଦର ପ୍ରୟୋଗ କରନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ସ୍ଥାନରେ ସୂର୍ଯ୍ୟ ଅର୍ଥରେ 'ବିକର୍ତ୍ତନ' ଶବ୍ଦର ପ୍ରୟୋଗ ହୋଇଥିଲେ ତାଂ ବଦଳରେ 'ରବିଦେବ' ପ୍ରୟୋଗ କରିଦିଅନ୍ତି । କେବଳ ସେତିକି ନୁହେଁ ଅନୁସ୍ୱାରର ଯଥେଚ୍ଛା ବ୍ୟବହାର, 'ଇ,ଈ' କାର,ଶ,ଷ, ସ ର ଅନୁମାନ କରି ପ୍ରୟୋଗ କରିବା ଓ ଆଞ୍ଚଳିକ ପ୍ରଭାବରେ ପ୍ରଭାବିତ ହେବାଦ୍ୱାରା ମଧ୍ୟ ଅନୁଲିପିକାର ସମସ୍ୟାର ସମ୍ମୁଖୀନ ହୁଅନ୍ତି । ଏପରିକି ଲେଖକ କରିଥିବା ବର୍ଣ୍ଣନାର ଉଦ୍ଦେଶ୍ୟ ଓ ମହତ୍ତ୍ୱକୁ ବୁଝି ନ ପାରିବା ଦ୍ୱାରା ମଧ୍ୟ ଅନୁଲିପିକାର ସମୟ ସମୟରେ ଅସୁବିଧାରେ ପଡ଼ନ୍ତି ।

୧୧) ସଂଖ୍ୟା ବା ଅଙ୍କ ପ୍ରୟୋଗରେ

ସମୟ ସମୟରେ ଅନୁଲିପିକାର ସଂଖ୍ୟା ବା ଅଙ୍କ ପ୍ରୟୋଗ ସ୍ଥଳରେ ସମସ୍ୟାର ସମ୍ମୁଖୀନ ହୁଅନ୍ତି । ଏହି ସଂଖ୍ୟା ପ୍ରୟୋଗ ସୈନ୍ୟ ସାମନ୍ତ ତାଲିକା, ରଜାଙ୍କର ରାଜତ୍ୱ ସମୟ ବା ପ୍ରେମିକ ପ୍ରେମିକାଙ୍କର ବିଳାସ ସମୟ ଆଦି ବର୍ଣ୍ଣନା ସ୍ଥାନରେ ହୋଇଥାଏ । ଅନୁଲିପି ପ୍ରସ୍ତୁତି ସମୟରେ ଅନୁଲିପିକାର ଏଥିରେ ବୃଦ୍ଧି ବା ହ୍ରାସ କରାଇଥାନ୍ତି ।

୧୨) ଶବ୍ଦର ସ୍ଥାନ ପରିବର୍ତ୍ତନ

ସାଧାରଣତଃ ପ୍ରତ୍ୟେକ ବ୍ୟକ୍ତିର କଥନ ଭଙ୍ଗୀ ସ୍ୱତନ୍ତ୍ର ହୋଇଥାଏ । ସେହି ଦୃଷ୍ଟିରୁ ବାକ୍ୟରେ ସ୍ଥାନ ପରିବର୍ତ୍ତନ ହୋଇଥାଏ । ଲେଖନକାର ନିଜ କହିବା ଭଙ୍ଗୀକୁ ଅନୁଲିପିରେ ରଖିବାକୁ ଯାଉଁବା ଫଳରେ ମୂଳ ଅନୁଲିପିରେ ଥିବା ଶବ୍ଦ ସବୁର ସ୍ଥାନ ପରିବର୍ତ୍ତିତ ହୋଇ ମୂଳ ଲେଖାର ପ୍ରକୃତ ଭାବ ପ୍ରକାଶ କରିବାରେ ଅକ୍ଷମ ହୋଇଥାଏ ।

କ) ୧ମ ପୋଥି—ଦୁଷ୍ଟ ଜନେ ସେହ୍ନମନ୍ତ ମିନା ବସ୍ତ୍ରହରଣି
୨ୟ ପୋଥି—ସେହ୍ନମନ୍ତ ମିନା ଏ ଦୁଷ୍ଟଙ୍କୁ ବସ୍ତ୍ରହରଣି ।

ଖ) ୧ମ ପୋଥି—ଖଣ୍ଡିତପତି ହେବାକୁ ତୁ ଯେବେ ମନ କରୁ
୨ୟ ପୋଥି—ତୁ ଯେବେ ଖଣ୍ଡିତପତି ହେବାକୁ ମନ କରୁ ।

୧୩) ସଚେତନ ପରିତ୍ୟାଗ

ବିଂଶ ଶତାବ୍ଦୀରେ ଯେତେବେଳେ ପ୍ରାଚୀନ କବିମାନଙ୍କୁ ଅଶ୍ଳୀଳତା ଦୋଷ ଦୁଷ୍ଟ ବୋଲି ସମାଲୋଚନା କରାଗଲା, ସେତେବେଳେ କାବ୍ୟରେ ବା ପୁରାଣରେ ଥିବା ସମ୍ଭୋଗ ବର୍ଣ୍ଣନାର ଶବ୍ଦ ସବୁକୁ ଅନୁଲିପିକାରମାନେ ସଚେତନ ଭାବେ ପରିତ୍ୟାଗ କରିବାକୁ ଆରମ୍ଭ କଲେ । ଫଳରେ ଗ୍ରନ୍ଥ କର୍ତ୍ତାଙ୍କ ଅସଲ ରୂପ ଆବୃତ ହୋଇଗଲା ।

ମୋଟ ଉପରେ ଅନୁଲିପିକାର ଉପରୋକ୍ତ ସମସ୍ୟାଗୁଡ଼ିକର ସମ୍ମୁଖୀନ ହେବା ଦ୍ୱାରା ଅନୁଲିପି ପ୍ରସ୍ତୁତ ସମୟରେ କେତେକ ପ୍ରମାଦ ସୃଷ୍ଟି ହୋଇଥାଏ । ସେହି ପ୍ରମାଦ କ୍ରମଶଃ ପରବର୍ତ୍ତୀ ଅନୁଲିପି ବେଳେ ବଢ଼ି ବଢ଼ି ଗ୍ରନ୍ଥର ମୂଳରୂପ ଭାବ ଓ ଭାଷା ଆଦିରୁ କ୍ରମଶଃ ଦୂରେଇଯାଇ ଏକ ନୂତନ ରୂପ ଧାରଣ କରେ । ତେଣୁ ଏହି ନୂତନ ରୂପରୁ ଗ୍ରନ୍ଥର ମୂଳରୂପକୁ ନିର୍ଣ୍ଣୟ କରିବା ନିମନ୍ତେ ପାଣ୍ଡୁଲିପି ସମ୍ପାଦନାର ଆବଶ୍ୟକତା ଯଥେଷ୍ଟ ରହିଛି ।



# ପାଣ୍ଡୁଲିପି ସଂଗ୍ରହ ଓ ଅନୁଲିପି ପ୍ରସ୍ତୁତି

ଗ୍ରନ୍ଥ ସମ୍ପାଦନା ନିମନ୍ତେ ପ୍ରଥମେ ଗୃହୀତ ଗ୍ରନ୍ଥର କେତେକ ପୋଥି ବା ଅନୁଲିପି ସଂଗ୍ରହ କରିବା ଏକାନ୍ତ ଅପରିହାର୍ଯ୍ୟ । କାରଣ ସମ୍ପାଦକ ବିଭିନ୍ନ ଅନୁଲିପି ମଧ୍ୟରେ ଥିବା ତଥ୍ୟକୁ ଆଧାର କରି ନିଜର ବିଚାର ବିବେଚନା ଦ୍ୱାରା ମୂଳପାଠ ନିକଟରେ ପହଞ୍ଚିବା ସୁବିଧାଜନକ ହୋଇଥାଏ । ଏଥିପାଇଁ ସେ ମୁଦ୍ରିତ ପୁସ୍ତକ ଓ ପୋଥି ଉପରେ ମଧ୍ୟ ନିର୍ଭର କରିପାରେ । ଏ ସମସ୍ତ ପୋଥି ବା ପୁସ୍ତକ ବିଭିନ୍ନ ବ୍ୟକ୍ତି ବିଶେଷ, ସଂଗ୍ରହାଳୟ ତଥା ପୁସ୍ତକାଳୟରେ ସଂରକ୍ଷିତ ହୋଇଥାଏ । କେତେକ ସଂଗ୍ରହାଳୟରେ ସଂଗୃହୀତ ପୋଥିମାନଙ୍କର ବିସ୍ତୃତ ବର୍ଣ୍ଣନାତ୍ମକ ବା ବିବରଣାତ୍ମକ ଗ୍ରନ୍ଥସୂଚୀ (*Descriptive Catalogue of Manuscript*) ମାନ ରହିଥାଏ । ଏହି ଗ୍ରନ୍ଥସୂଚୀ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ବିଧାନ ଥାଏ । ଯେଉଁଥିରେ ପୋଥିର ନାମ, ଲେଖକ, ନକଲକାର, ପୃଷ୍ଠା, ଅବସ୍ଥା, ସମୟ, ପ୍ରାପ୍ତିସ୍ଥାନ ଆଦି ବିଭିନ୍ନ ଜ୍ଞାତବ୍ୟ ତଥ୍ୟର ସୂଚନା ରହିଥାଏ । ୧ । ସମ୍ପାଦକ ଏହି ପୋଥିମାନଙ୍କର ସାହାଯ୍ୟ ନେବା ସଙ୍ଗେ ସଙ୍ଗେ ନିଜଦ୍ୱାରା ସଂଗୃହୀତ ପୋଥିକୁ ମଧ୍ୟ ସମ୍ପାଦନାର ସାମଗ୍ରୀ ରୂପେ ବ୍ୟବହାର କରିପାରେ । ସ୍ଥଳବିଶେଷରେ ପୋଥିକୁ ନିଜେ ନକଲ କରି ବା ଅନ୍ୟଦ୍ୱାରା ନକଲ କରାଇ ଆଣି ସମ୍ପାଦନା କାର୍ଯ୍ୟରେ ବ୍ୟବହାର କରିବା ଦରକାର । ଏହି ନକଲଗୁଡ଼ିକ ନିର୍ଭୁଲ ତଥା ନିର୍ଭରଯୋଗ୍ୟ ହେବା ଏକାନ୍ତ ଆବଶ୍ୟକ । କେତେକ ଦୁର୍ଲଭ ପୋଥିର ଫଟୋଷ୍ଟାଟ ବା *Xerox* ନକଲ ଆଣି ସମ୍ପାଦନା ନିମନ୍ତେ ବ୍ୟବହାର କରାଯାଇପାରେ ।

ପୋଥି ବା ତାର ଅନୁଲିପି ସଂଗ୍ରହ ବେଳେ ବିଭିନ୍ନ ସମୟର ତଥା ସ୍ଥାନର ଅନୁଲିପି ସମ୍ପାଦନା ନିମନ୍ତେ ବିଶେଷ ଉତ୍ତମ । ଗ୍ରନ୍ଥ କର୍ତ୍ତାଙ୍କ

୧) ପରିଶିଷ୍ଟ 'କ' ଦ୍ରଷ୍ଟବ୍ୟ ।

ସମସ୍ତଠାରୁ ଯେତେ କମ୍ ବ୍ୟବଧାନ ସମୟର ପୋଥିକୁ ନିଆଯାଇ ସମ୍ପାଦନା କାର୍ଯ୍ୟରେ ବିନିଯୋଗ କରାଯାଇପାରେ ତାହା ସେତେ ଶୁଦ୍ଧ ତଥା ବିଶ୍ୱାସ ଯୋଗ୍ୟ ସମ୍ପାଦନା ହୋଇପାରେ । କେବଳ ସେତିକି ନୁହେଁ ଏଥିପାଇଁ ରଚୟିତାର ଗ୍ରନ୍ଥରଚନା ସ୍ଥାନର ନିକଟବର୍ତ୍ତୀ ଅଞ୍ଚଳର ପୋଥିକୁ ହିଁ ଉକ୍ତ ଯୋଗ୍ୟ ନକଲ ରୂପେ ମଧ୍ୟ ଗ୍ରହଣ କରାଯାଇ ଶୁଦ୍ଧ ସମ୍ପାଦନା କାର୍ଯ୍ୟ କରାଯାଇପାରେ ।

ପୋଥିକୁ ସଂଗ୍ରହ କରି ଅନୁଲିପି ପ୍ରସ୍ତୁତ ସମୟରେ ଆବଶ୍ୟକ ସ୍ଥଳରେ ଯବକାଚ (*Magnifying glass*) ର ସାହାଯ୍ୟ ନେଇ ପାଠ ଉଦ୍ଧାର କରିବା ଦରକାର । କାରଣ ସମୟ ସମୟରେ ପୋଥିର ଅକ୍ଷର ଅତି କ୍ଷୁଦ୍ର କିମ୍ବା ଅସ୍ପଷ୍ଟ ହୋଇଥିଲେ ବା ତ୍ରୁଟି ହୋଇ ଲେଖା ଯାଇଥିଲେ ଏହି କାଚଦ୍ୱାରା ତାହା ସ୍ପଷ୍ଟ ରୂପେ ପଢ଼ି ହୋଇପାରେ । ତେଣୁ ପୋଥି ସମ୍ପାଦନା ନିମନ୍ତେ ଏହାର ଆବଶ୍ୟକତା ଯଥେଷ୍ଟ ରହିଛି ।

ପୋଥିର ଅକ୍ଷରଗୁଡ଼ିକୁ ସ୍ପଷ୍ଟ ରୂପେ ପଢ଼ିବା ପାଇଁ ପୂର୍ବେ ଶିମ୍ବ (ଝୁଣ୍ଟା) ପତ୍ର, ହାଣ୍ଡିକଳା, ହଳଦୀ, ଗୁଗୁଳ, ହରିଡ଼ା ଆଦିର ପ୍ରୟୋଗ କରାଯାଉଥିଲା । ଏହାଦ୍ୱାରା ପୋଥିର ଅକ୍ଷର ଗୁଡ଼ିକ ସ୍ପଷ୍ଟ ରୂପେ ପଢ଼ି ହେବା ସଙ୍ଗେ ସଙ୍ଗେ ପୋଥିଟି ସୁସଂରକ୍ଷିତ ହୋଇପାରୁଥିଲା ।

## ଅନୁଲିପି ପ୍ରସ୍ତୁତି

ପୋଥିଟିଏ ସଂଗ୍ରହ କରି ତାର ସଂରକ୍ଷଣ କରିଦେଲେ ପୋଥିର କାମ ସରିଗଲା ତା'ନୁହେଁ । ପୋଥି ପଢ଼ିବା ସମସ୍ତଙ୍କ ପକ୍ଷେ ସମ୍ଭବପର ନୁହେଁ । ତେଣୁ ପୋଥିଟିର ପଠନ ଉପଯୋଗୀ ଏକ ନକଲ ପ୍ରସ୍ତୁତ କରିବାକୁ 'ଅନୁଲିପି ପ୍ରସ୍ତୁତି' କୁହାଯାଏ । ଏହି ଅନୁଲିପି ପ୍ରସ୍ତୁତ କରିସାରିବା ପରେ ସମ୍ପାଦକ ଆବଶ୍ୟକୀୟ ସଂଶୋଧନ କରି ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରେ । ଓଡ଼ିଆ ପୋଥିର ସମ୍ପାଦନା ସମୟରେ କେଉଁ ଭ୍ରମ ଗୁଡ଼ିକ ସଂଶୋଧନ କରିବାକୁ ହେବ ଏବଂ କେଉଁ ଗୁଡ଼ିକୁ ଅବିକଳ ଭାବରେ ରଖିବାକୁ ହେବ, ସେ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ନିୟମ ଦୃଷ୍ଟିଗୋଚର ନ ହେଲେ ହେଁ ଅନୁଲିପିକାର ଅନୁଲିପି ପ୍ରସ୍ତୁତି ସମୟରେ ବିଶେଷ ସତର୍କତା ଅବଲମ୍ବନ କରିବା ଦରକାର ।

ଅନୁଲିପିକାର ଅନୁଲିପି ପ୍ରସ୍ତୁତ କରିବା ସମୟରେ ପ୍ରଥମେ ପୋଥିଟିର ଅବିକଳ ନକଲ କରିବା ଆବଶ୍ୟକ । ଏହି ନକଲ ସମୟରେ ପୋଥିରେ ଥିବା ଇ, ଈ, ଉ, ଊ କାର, ଜ, ଯ, ଶ, ଷ, ସ ଆଦି ବ୍ୟଞ୍ଜନଗୁଡ଼ିକୁ ଅବିକଳ ଉତାରି ତନ୍ମଧ୍ୟରୁ ଯେଉଁଗୁଡ଼ିକ ତତ୍ସମ ଓ ତଦ୍ଭବ ଶବ୍ଦ ହୋଇଥିବ, ସେଗୁଡ଼ିକରେ ବନାନଗତ ଅଶୁଦ୍ଧିକୁ ସଂଶୋଧନ କରିଲେ ବିଶେଷ କିଛି ଅସୁବିଧା ହେବ ନାହିଁ । କିନ୍ତୁ ଅନୁଲିପିକାର ଯଦି ଦେଶଜ ଶବ୍ଦକୁ ସଂଶୋଧନ କରିଦିଏ ତେବେ ତାହା ନିର୍ଦ୍ଦିଷ୍ଟ ସମୟର ଭାଷା ସଂପର୍କରେ ସଠିକ ତଥ୍ୟ ପ୍ରଦାନ କରିବା ପାଇଁ ଅସମର୍ଥ ହେବ । ତେଣୁ ଦେଶଜ ଶବ୍ଦକୁ ସଂଶୋଧନ ନକରି ଅବିକଳ ଭାବରେ ରଖିବା ଦରକାର । ଏହି ଦେଶଜ ଶବ୍ଦ ମଧ୍ୟରେ ତେକୁ ତେକୁ, ନାହାଇ ବେଳି, ଆଡ଼ୋ ଆଡ଼ୋ, ଖୋସି, ଖୋରି, ନାଳୁଆ, ଭୃଙ୍ଗିଆ, ପରମୁଣ୍ଡା ଅଗୃଭୂଆ, ଉଭୁଷ ଆଦି ଅନ୍ୟତମ । ୨ ।

ଅନୁଲିପି ପ୍ରସ୍ତୁତ ସମୟରେ ପ୍ରାଚୀନ ପ୍ରୟୋଗଗୁଡ଼ିକୁ ଅବିକଳ ଭାବରେ ରଖିବା ଦରକାର । ଏହି ପ୍ରାଚୀନ ପ୍ରୟୋଗ ମଧ୍ୟରେ ବିଭକ୍ତି ପ୍ରୟୋଗ, ପ୍ରାଚୀନକ୍ରିୟା, ନାମବାଚକ ଶବ୍ଦ, ପ୍ରାଚୀନଶବ୍ଦ ଆଦି ଅନ୍ୟତମ ।

(କ) ପ୍ରାଚୀନ ବିଭକ୍ତି ପ୍ରୟୋଗ—

୧) ଦ୍ୱିତୀୟା ବିଭକ୍ତିରେ 'ନ୍ତ' ପ୍ରୟୋଗ :
ଯଥା :-ଭୂଷନ୍ତ, ବାଳକନ୍ତ

୨) କର ପ୍ରୟୋଗ :
ଯଥା- କୁମ୍ଭକର, ମୃଗକର

ଖ) ପ୍ରାଚୀନ କ୍ରିୟା ପ୍ରୟୋଗ—
ଯଥା- ପଳାବନ୍ତି, ଗୋଡାବନ୍ତି, ଯାଅଛି, ହୋଇଲନ୍ତି, ବୋଇଲନ୍ତି ଇତ୍ୟାଦି

---

୨) ଜଗମୋହନ ରାମାୟଣ ଆଦିକାଣ୍ଡ—ସଂପାଦକ ଡ଼ଃ କୃଷ୍ଣଚରଣ ସାହୁ, ୧୯୮୦, ପୃ. ୪୭

ଗ) ନାମବାଚକ ଶବ୍ଦ—

ଯଥା- ସାରଳା = ସାରେଳା,
ଯୁଧିଷ୍ଠିର = ଯୁଜେଷ୍ଟି
ଦୁର୍ଯ୍ୟୋଧନ = ଦ୍ରିଯୋଧନ

ଘ) ପ୍ରାଚୀନ ଶବ୍ଦ—

ଯଥା-ଗଡ଼ଖାଲି, ବେଗଳ, ନମ୍ଭାଣ, ଝିଙ୍ଗାସ, ଭ୍ରଛନା ।

ଅନୁଲିପିକାର ପୋଥିର ପତ୍ରରେ ଉଲ୍ଲେଖ ଥିବା ପ୍ରତ୍ୟେକ ଶବ୍ଦକୁ ବିଚାର କରି ନକଲ କରିବା ଦରକାର । ପୋଥିରେ ପ୍ରତ୍ୟେକ ଅକ୍ଷର ଲଗି ଲଗି କରି ଲେଖାହୋଇଥାଏ ଓ ପୋଥି ବାନ୍ଧିବା ନିମନ୍ତେ ମଧ୍ୟ ଭାଗରେ ଥିବା ଛିଦ୍ରଟି ପାଖରେ ଅକ୍ଷର ଛାଡ଼ିକରି ଲେଖା ହୋଇଥାଏ । ଅର୍ଥାତ୍ ଗୋଟିଏ ଶବ୍ଦର କେତେକ ଅକ୍ଷର ଛିଦ୍ରର ଉଭୟ ପାର୍ଶ୍ୱରେ ରହିବା ଦ୍ୱାରା ଅନୁଲିପିକାର ସତର୍କତା ଅବଲମ୍ବନ ନକଲେ ନକଲ ସମୟରେ ତ୍ରୁଟି ରହିଯାଏ । ଯଥା :—

ଯେତେତୋ ହର ମାୟାରେ = ଯେ ତୋହର ମାୟାରେ

ପ୍ରାକୃତ ଭାଷାରେ ଉଚ୍ଚାରଣଗତ ବୈଶିଷ୍ଟ୍ୟକୁ ବିଶେଷ ସମ୍ମାନ ପ୍ରଦର୍ଶନ କରାଯାଇଅଛି । ଭାରତର ଶୌରସେନୀ, ମାଗଧୀ, ଅର୍ଦ୍ଧମାଗଧୀ, ଅପଭ୍ରଂଶ ଶବ୍ଦ ଗୁଡ଼ିକରେ ଉଚ୍ଚାରଣଗତ ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ଏତଦ୍ବ୍ୟତୀତ ଭୌଗଳିକ ପରିସ୍ଥିତି ଦୃଷ୍ଟିରୁ ଗୋଟିଏ ଶବ୍ଦ ଭିନ୍ନ ଭିନ୍ନ ଅଞ୍ଚଳରେ ପୃଥକ ପୃଥକ୍ ରୂପେ ଉଚ୍ଚାରିତ ହୁଏ । ଅର୍ଥାତ୍ ପ୍ରାମାଣିକ ଓଡ଼ିଆ ଭାଷାର ବହୁଉଦ୍ଧ୍ୱନି ଉତ୍ତର ଓଡ଼ିଶାରେ ସବୃତ ଧ୍ୱନିରେ ପରିଣତ ହୋଇଥାଏ । ଯଥା :-

ଲୋକ = ଲୁକ, ଗୋଟେ = ଗୁଟେ ଇତ୍ୟାଦି ।

ସେହିପରି ଆଦ୍ୟ ଅକ୍ଷରରେ ଥିବା 'ଓ' = 'ଅ' କାର ହୋଇଥାଏ । ଯଥା:-
ମୋର = ମର, ତୋତେ = ତତେ ଇତ୍ୟାଦି ।

ତେଣୁ ଓଡ଼ିଆ ପୋଥିର ଅନୁଲିପି ପ୍ରସ୍ତୁତ ସମୟରେ ଏହିପରି ଉଚ୍ଚାରଣଗତ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଦେବା ଏକାନ୍ତ ଆବଶ୍ୟକ । ଆଞ୍ଚଳିକ ଭାଷା ପ୍ରୟୋଗର ବିଚାର ସମୟରେ ଏହି ତ୍ରୁଟି ଅନୁଭବ ହେବା ବିଚିତ୍ର ନୁହେଁ ।

କେତେକ ପୋଥିର ଭାଷାରେ କଥିତ ପ୍ରୟୋଗ ଦେଖିବାକୁ ମିଳେ । ଏହି କଥିତ ପ୍ରୟୋଗ ମଧ୍ୟରେ ହଇ (ହଁ ଅର୍ଥରେ), ଯିମି (ଯିବ), ଝିସ (ଯେପରି), କସ (କଅଣ) ଆଦି ଅନ୍ୟତମ । ତେଣୁ ଅନୁଲିପିକାର ଅନୁଲିପି ପ୍ରସ୍ତୁତ ସମୟରେ ଏଥିପ୍ରତି ସତର୍କ ରହିବା ଦରକାର ।

ଏତଦ୍‌ବ୍ୟତୀତ ଆବଶ୍ୟକତା ନଥିବା ସ୍ଥଳରେ ଅନୁନାସିକ ଉଚ୍ଚାରଣର ପ୍ରୟୋଗ, ଶ, ଷ କୁ 'ଶ୍ୟ' 'ଷ୍ୟ' ରୂପେ ଉଚ୍ଚାରଣ, ପ୍ରଶ୍ନବାଚକ ଅର୍ଥରେ 'ଝି' ଶବ୍ଦର ପ୍ରୟୋଗ, ସ୍ତ୍ରୀଲିଙ୍ଗ ବାଚକ ଶବ୍ଦରେ 'ଯୂା' ପ୍ରୟୋଗ ମଧ୍ୟ କେତେକ ପୋଥିରେ ହୋଇଥାଏ । ଏପରିକି ଅନାଠନ, ନର୍ଗୁଣୀ, ନିରୋଗୀ ଆଦି କେତେକ ବ୍ୟାକରଣଗତ ଭୁଲ ଶବ୍ଦର ପ୍ରୟୋଗକୁ ଅନୁଲିପି ପ୍ରସ୍ତୁତ ବେଳେ ଅବିକଳ ରଖିବା ଦରକାର ।

ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀଠାରୁ ଓଡ଼ିଆ ଭାଷା ଉପରେ ବିଶେଷ କରି ବୈଦେଶିକ ପ୍ରଭାବ ଲକ୍ଷ୍ୟ କରାଯାଏ । ଏହି ପ୍ରଭାବ ଦ୍ୱାରା କେତେକ ବୈଦେଶିକ ଶବ୍ଦ ବିକୃତ ତଥା ଅବିକୃତ ଭାବରେ ପୋଥି ମଧ୍ୟରେ ପ୍ରବେଶ କରିଥାଏ । ବାବରଙ୍କ ମୋଗଲ ସାମ୍ରାଜ୍ୟ ଏ ଦେଶରେ ଖ୍ରୀ. ୧୫୨୬ରେ ପ୍ରତିଷ୍ଠିତ ହୋଇଥିଲେ ହେଁ ମୋଗଲ ଜାଡର କାହାଣୀ ଏହାଙ୍କ ବହୁ ପୂର୍ବରୁ ଏଦେଶରେ ପ୍ରଚଳିତ ହୋଇଥିଲା । ଫଳରେ ବହୁ ବୈଦେଶିକ ଶବ୍ଦ ଏଦେଶର ସାହିତ୍ୟରେ ପ୍ରବେଶ କରିବାର ସୁଯୋଗ ଲାଭ କରିଥିଲା । ଏହି ବୈଦେଶିକ ଶବ୍ଦ ମଧ୍ୟରେ ମୁଗଲ କୁଚରାଯୁ, ଦରହାସ ଅସଲ୍ଲାବ ଗିଲମି (କୋମଳ), ତକସ, କମାଣ ଆଦି ଅନ୍ୟତମ । ୨ । ତେଣୁ ଅନୁଲିପିକାର ଅନୁଲିପି ପ୍ରସ୍ତୁତ ସମୟରେ ଏଭଳି ଶବ୍ଦ ସମୂହକୁ ଏଡ଼ାଇ ଯିବା କିମ୍ବା ସଂଶୋଧନ କରିବା ଉଚିତ ନୁହେଁ ।

ଉପରୋକ୍ତ ଦିଗଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ଦେଇ ଯଦି ଅନୁଲିପି ପ୍ରସ୍ତୁତ କରାଯାଏ ତେବେ ସମ୍ପାଦନା ସମୟରେ ଏହା ବିଶେଷ ସହାୟକ ହୋଇଥାଏ ।

—*—

୨) ଜଗମୋହନ ରାମାୟଣ—ସମ୍ପାଦକ ଡ଼ଃ କୃଷ୍ଣଚରଣ ସାହୁ, ୧୯୮୦, ପୃ. ୪୮ ।

# ପାଣ୍ଡୁଲିପିର ପର୍ଯ୍ୟାଲୋଚନା

ପାଣ୍ଡୁଲିପି ଗୁଡ଼ିକର ସଂଗ୍ରହ ଓ ଅନୁଲିପି ପ୍ରସ୍ତୁତ ପରେ ସେଗୁଡ଼ିକର ବିଶେଷ ପର୍ଯ୍ୟାଲୋଚନା କରିବା ଦରକାର । ଏହି ପର୍ଯ୍ୟାଲୋଚନା ଦ୍ୱାରା ପୋଥିଟିର ରୂପ ଓ ରୂପାନ୍ତର ବିଷୟ ସ୍ପଷ୍ଟ ହୋଇଯାଏ । ତେଣୁ ପର୍ଯ୍ୟାଲୋଚନା ନିମନ୍ତେ ଏକାଧିକ ପୋଥିର ଆବଶ୍ୟକତା ରହିଛି । ପର୍ଯ୍ୟାଲୋଚନା ସାଧାରଣତଃ ବହିଃସାକ୍ଷ୍ୟ ଓ ଅନ୍ତଃସାକ୍ଷ୍ୟ ଦ୍ୱାରା କରାଯାଏ ।

## ବହିଃ ସାକ୍ଷ୍ୟ

ପୋଥିଟି ପାଇସାରିବା ପରେ ତାକୁ ସଂରକ୍ଷଣ ନିମନ୍ତେ ପ୍ରସ୍ତୁତ କରି ତା'ର ବହିଃସାକ୍ଷ୍ୟର ପର୍ଯ୍ୟାଲୋଚନା କରାଯିବା ଦରକାର । ଏହି ବହିଃ ସାକ୍ଷ୍ୟ ମଧ୍ୟରେ ପୋଥିର ଆକାର ପ୍ରକାର ଅର୍ଥାତ୍ ପୋଥିର ଦୈର୍ଘ୍ୟ, ପ୍ରସ୍ଥକୁ ଗ୍ରହଣ କରାଯାଏ । ପୋଥିର ମୋଟ ପୃଷ୍ଠା ଓ ପୃଷ୍ଠା ସଂଖ୍ୟା କିପରି ଭାବରେ ବା କେଉଁ ଲିପିରେ ପ୍ରଦତ୍ତ ହୋଇଛି ତାକୁ ଦେଖିବା ଦରକାର । କେବଳ ସେତିକି ନୁହେଁ ପୋଥିରେ କିପରି ଅକ୍ଷର ଲେଖାଯାଇଛି ତାକୁ ବିବେଚନା କରିବା ସଙ୍ଗେ ସଙ୍ଗେ ଲିଖନକାର ପୋଥିରେ ଥିବା ଭୁଲକୁ କିପରି ସଂଶୋଧନ କରିଛି, ଯେଉଁଠି ଫଙ୍କା ପଡ଼ିଛି ସେଠାରେ ସେ କ'ଣ କରିଛି, ପୋଥି ମଧ୍ୟରେ ଖାଲିପନ୍ନ ଛୁଡ଼ିଛି ନା ନାହିଁ; ପୋଥି ଲିଖନର ଉଦ୍ଦେଶ୍ୟ, ନିଜର ପରିଚୟ ଓ ଲିଖନ ସମୟ ଆଦି ଦେଇଛି ନା ନାହିଁ ଦେଖିବା ଦରକାର ।

ସମୟ ସମୟରେ କବି ନିଜ କାବ୍ୟ ମଧ୍ୟରେ ଯେଉଁସବୁ ପ୍ରାଚୀନ ଛନ୍ଦ ବା ବାଣୀଙ୍କ ବ୍ୟବହାର କରିଥାନ୍ତି ତନ୍ମଧ୍ୟରୁ କବିଙ୍କର ପ୍ରାଚୀନତା ବିଚାର କରାଯାଇପାରେ । ପୋଥି ମଧ୍ୟରେ ଥିବା ଅକ୍ଷରକୁ ପର୍ଯ୍ୟାଲୋଚନା

କରିବା ସମୟରେ ପୋଥିଟି ଜଣକ ଦ୍ୱାରା ଲିଖିତ ନା ଏକାଧିକ ବ୍ୟକ୍ତିଙ୍କ ଦ୍ୱାରା ଲିଖିତ ତାହା ଜଣାପଡ଼େ । ଏତଦ୍ ବ୍ୟତୀତ ପୋଥିଟିରେ କେଉଁ କେଉଁ ପ୍ରକାର ଲିପି ପ୍ରୟୋଗ କରାଯାଇଅଛି ତାକୁ ମଧ୍ୟ ବିବେଚନା କରିବା ଦରକାର

ପୋଥିର ବାହ୍ୟ ସାକ୍ଷ୍ୟର ପର୍ଯ୍ୟାଲୋଚନା ସମୟରେ **ପୁଷ୍ପିକାର** ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ କେତେକ ପୋଥିର ଶେଷରେ ଥିବା ପୁଷ୍ପିକାରେ ପୋଥିଟିର ନକଲକାରର ପରିଚୟ, ନକଲର ଉଦ୍ଦେଶ୍ୟ ସହିତ ନକଲ ଶେଷ ହେବାର ସନ, ତାରିଖ, ସ୍ଥାନ ଓ ସମୟ ଆଦିର ଉଲ୍ଲେଖ କରାଯାଇଥାଏ । ଫଳରେ ଏଥିରୁ ଉକ୍ତ ପୋଥିର ସମୟ ନିର୍ଦ୍ଧାରଣ ସହିତ ଅଞ୍ଚଳ ସମ୍ପର୍କରେ ଜାଣିବା ସହଜ ସାଧ୍ୟ ହୋଇଥାଏ । ଉଦାହରଣ ସ୍ୱରୂପ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କୃତ 'ସୁବର୍ଣ୍ଣରେଖା' ପୋଥିର ପୁଷ୍ପିକାରେ ନିମ୍ନୋକ୍ତ ପାଠ ଉଲ୍ଲେଖ କରାଯାଇଅଛି । "ଏ ପୁସ୍ତକ ଲେଖା ବର୍ତ୍ତିଲା କାଲେ ତାଳଚେର ଡେଙ୍କାନାଳ ମୌଜେ ସାନଗୋବରା ଗ୍ରାମରେ କଲୁ ଘିଙ୍ଗିଆ କଳୀବର ଗ୍ରାମରୁ ଆସି ନାରାୟଣ ଦାସ୍ତବନ୍ଧୁ ସାହୁ ଲେଖିଲେ ନ । ଏ ପୁସ୍ତକ ଲେଖା ବର୍ତ୍ତିଲା ୧୯ ଅଙ୍କ ସନ ୧୩୦୪ ସାଲେ ମାହେ କାର୍ତ୍ତିକ ମାସ ସୁକ୍ଳପକ୍ଷ ଦ୍ୱାଦସୀ ବେଳ ୧୪ ଘଡ଼ିଠାରେ ଲେଖା ବର୍ତ୍ତିଲା ।"

ଯଦି ପୋଥି ମଧ୍ୟରେ ଗ୍ରନ୍ଥକାର ସ୍ୱଗ୍ରନ୍ଥକୁ କେଉଁ ରାଜାଙ୍କ କେତେ ଅଙ୍କରେ ସମାପ୍ତ କଲେ ତାହାର ସୂଚନା ଦେଇଥାନ୍ତି ତେବେ ତନ୍ମଧ୍ୟରୁ ଗ୍ରନ୍ଥଟିର ରଚନା ସମୟ ନିର୍ଦ୍ଧାରଣ କରାଯାଇପାରେ । ଉଦାହରଣ ସ୍ୱରୂପ ବିପ୍ର ରାମ ଦାସ ବିରଚିତ 'ଦାର୍ଢ୍ୟତା ଭକ୍ତି ରସାମୃତ'ରେ ଉଲ୍ଲେଖ କରିଛନ୍ତି:-

"ଏଦାର୍ଢ୍ୟ ଭକ୍ତି କଥାମାନ । ପଚିଶ ଅଧ୍ୟାୟରେ ସମ୍ପୂର୍ଣ୍ଣ ।<br>ଶ୍ରୀବୀର କେଶରୀ ଦେବଙ୍କ । ସମ୍ପୂର୍ଣ୍ଣ ବୟାଳିଶି ଅଙ୍କ ।<br>ଯେ ତୁଳ ପଞ୍ଚମୀ ଦିବସେ । ଶୁଦ୍ଧ ଶୁକଳ ପକ୍ଷରେ ସେ ।<br>ଶତ୍ରା ନକ୍ଷତ୍ର ରବିବାରେ । ତତ୍ତ୍ୱ ଲକ୍ଷ୍ମୀ ନାମ କରଣରେ ।"

ଇତ୍ୟାଦି

ଅର୍ଥାତ୍ ଦାର୍ଢ୍ୟତା ଭକ୍ତି ରସାମୃତର ୨୫ ଅଧ୍ୟାୟ ଶ୍ରୀବୀର କେଶରୀ ଦେବଙ୍କ ୪୨ ଅଙ୍କ ତୁଳମାସ ପଞ୍ଚମୀ ରବିବାର ଦିନ ସମାପ୍ତ ହୋଇଥିବା କଥା ସ୍ପଷ୍ଟ ହୁଏ ।

ପୋଥିର ପୁଷ୍ପିକାରେ ଲେଖନକାର ପୋଥି ଲିଖନର ଶ୍ରମ ଓ ତା'ର ପରିରକ୍ଷଣ ସମ୍ପର୍କରେ କେତେକ ସୂଚନା ଦେଇଥାନ୍ତି । ଯଥା:—

"ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷ ନ ବିଦ୍ୟତେ ।
ଭଗ୍ନପୃଷ୍ଠ କଟୀ ଗ୍ରୀବ ତୁଲ୍ୟ ଦୃଷ୍ଟିରଧୋମୁଖଂ
ଦୁଃଖେନ ଲିଖିତଂ ଗ୍ରନ୍ଥଂ ପୁତ୍ରବତ୍ ପରିପାଳୟେତ୍ ।"

କେବଳ କଷ୍ଟରେ ଲିଖିତ ଗ୍ରନ୍ଥକୁ 'ପୁତ୍ରବତ୍' ପାଳନ କରିବା ପାଇଁ କହି ଲେଖନକାର ସନ୍ତୁଷ୍ଟ ନ ହୋଇ ପୋଥିକୁ ଜଳ, ତୈଳ, ଢ଼ିଲାକରି ବାନ୍ଧିବା, ମୂଷା ତଥା ଅନ୍ୟ ହସ୍ତରୁ ରକ୍ଷା କରିବା ପାଇଁ ପୁନଶ୍ଚ ଉଲ୍ଲେଖ କରିଥାନ୍ତି:—

"ଜଳାଦ୍ରକ୍ଷ ତୈଳାଦ୍ରକ୍ଷ ରକ୍ଷ ମାଂ ଶ୍ଲଥବନ୍ଧନାତ୍
ଆଖୁଭ୍ୟଃ ପରହସ୍ତେଭ୍ୟ ଏବଂ ବଦତି ପୁସ୍ତକମ୍ ।"

କେତେକ ପୋଥିର ପୁଷ୍ପିକାରେ ନକଲକାରର ନାମ, ଜାତି, ବାସସ୍ଥାନାଦି ପରିଚୟ, ନିଜର ରକ୍ଷା ନିମନ୍ତେ ଭଗବାନଙ୍କୁ ପ୍ରାର୍ଥନା, ପୋଥି ସମ୍ପର୍କରେ ବିଶେଷ ବିବରଣୀ, ସମସାମୟିକ ଇତିହାସର ସୂଚନା ଆଦି ପ୍ରଦାନ କରାଯାଇଥାଏ । ଯଦି ପୋଥିଟି ସଂସ୍କୃତରୁ ଅନୁଦିତ ହୋଇଥାଏ ତେବେ ତା'ର ମଧ୍ୟ ସୂଚନା ଦେବାକୁ ଲେଖନକାର ଭୁଲି ନଥାନ୍ତି । ମୋଟ ଉପରେ ବିଭିନ୍ନ ପୋଥିର ପୁଷ୍ପିକାକୁ ଅନୁଧ୍ୟାନ କଲେ ଏ ସମସ୍ତ ବୃତ୍ତାନ୍ତ ଜଣାପଡ଼େ । ପ୍ରଚାର ଓ ପ୍ରସାର ତଥା ବିଦ୍ୱାନମାନଙ୍କ ଉଦ୍ଦେଶ୍ୟରେ ନକଲ କରାଯାଉଥିବାରୁ ଲେଖନକାର ପୋଥିଟି କାହାକୁ ଚୋରି ନଦିଏ ଏକଥା ମଧ୍ୟ ଲେଖିବା ପାଇଁ ଭୁଲ ନଥାନ୍ତି । କେତେକ ଲେଖନକାର ଧର୍ମାନ୍ଧ ବ୍ୟକ୍ତିମାନଙ୍କୁ ଧର୍ମର ଦୋହାଇଦେଇ ଚୋରି ନ କରିବା ପାଇଁ କିମ୍ବା ସମ୍ଭାବ୍ୟ ଚୋରକୁ ଉଦ୍ଦେଶ୍ୟ କରି ଅଭିଶାପ ମଧ୍ୟ ବର୍ଷଣ କରିଥାନ୍ତି । ଯଥା:—

"ପୁସ୍ତକଂ ହରତେ ଯସ୍ତୁ କାଣୋ ଦୁଃଖୀ ଭବେନ୍ନରଃ
ମୃତାଃ ସ୍ୱର୍ଗଂ ନ ଗଚ୍ଛନ୍ତୁ ପିତରଂ ନରକଂ ବ୍ରଜେତ୍ ।"

କିମ୍ବା

"ଯତ୍ନେନ ଲିଖିତଂ ବେଦଂ ଯତ୍ନସ୍ତାରମ୍ଭ ପୁସ୍ତକମ୍
ଶୁକ୍ଲସ୍ୟ ତସ୍ୟ ମାତା ଚ ପିତା ତସ୍ୟ ଚ ଗର୍ଦ୍ଦଭଃ ।" (୧)

କିମ୍ବା

"ଏ ପୁସ୍ତକ ଯେ ମାଗି ନେଇ ନ ଦେବ ଗୁପ୍ତକରି ରଖିବ ତା'
ସପ୍ତପୁରୁଷ ଅଛି ନର୍କରେ ପଡ଼ିବେ ଯାଣିବା ।" ଇତ୍ୟାଦି

କେତେକ ପୋଥିର ପୁଷ୍ପିକାକୁ ପର୍ଯ୍ୟାଲୋଚନା କରିବା ସମୟରେ ତନ୍ମଧ୍ୟରେ **ଲେଖନକାରର ଉଦ୍ଦେଶ୍ୟ** ସ୍ପଷ୍ଟ ରୂପେ ପ୍ରତିଫଳିତ ହୁଏ । ଏହି ଉଦ୍ଦେଶ୍ୟକୁ ଲେଖନକାର ପୋଥିର ଚାରୋଟି ସ୍ଥାନ ମଧ୍ୟରୁ ଯେକୌଣସି ସ୍ଥାନରେ ଦେଇପାରେ । ଏହି ଚାରୋଟି ସ୍ଥାନ ହେଉଛି:—

କ) ପୋଥି ଆରମ୍ଭରୁ ଅର୍ଥାତ୍ ପ୍ରଥମ ପୃଷ୍ଠାରେ

ଖ) ପୋଥି ଶେଷରେ ଅର୍ଥାତ୍ ପୁଷ୍ପିକା ମଧ୍ୟରେ

ଗ) କେତେକ ପୋଥିରେ ପୁଷ୍ପିକା ପରେ

ଘ) କେତେକ ପୋଥିର ମଝିରେ ଅର୍ଥାତ୍
ଯେଉଁ ପୋଥିରେ ଏକାଧିକ ଗ୍ରନ୍ଥ ବା ପାଠର ସଂଗ୍ରହ ହୋଇଥାଏ ସେହି ପୋଥିର ମଝିରେ ଲେଖନକାର ନିଜର ଉଦ୍ଦେଶ୍ୟ ଜ୍ଞାପନ କରିବାର ସମ୍ଭାବନା ଥାଏ ।

କେତେକ ପୋଥିରେ ଲେଖନକାର ସିଧା ସଳଖ ପୋଥି ଲେଖନର ଉଦ୍ଦେଶ୍ୟକୁ ଉଲ୍ଲେଖ କରିବା ସମୟରେ କେତେକ ପୋଥିରେ ଏ ସମ୍ପର୍କରେ ଆଦୌ ସୂଚନା ଦେଇ ନଥାନ୍ତି । ଏହି ଉଦ୍ଦେଶ୍ୟ ମଧ୍ୟରେ ଲେଖନକାର [illegible] ଗୋଟି କଥା ଲେଖିବାର ସମ୍ଭାବନା ରହିଛି । ଯଥା:—

କ) ଲେଖନକାର କାହାର ଶିଷ୍ୟ

ଖ) ଲେଖନକାର କେଉଁ ସ୍ଥାନରେ ପୋଥି ଲେଖିଛି (ଗାଁ, ଘର, ଦେଶ, ମଠ, ମନ୍ଦିର ଇତ୍ୟାଦି)

---

୧) ସାହିତ୍ୟବୀକ୍ଷା—ଦେବୀପ୍ରସନ୍ନ ପଟ୍ଟନାୟକ, ୧୯୭୫, ପୃ. ୧୯୭ ।

ଗ) ଲେଖନକାର କେଉଁ ସମୟରେ, ଯାହାରେ, ପଦପଦାର୍ଥରେ ପୋଥି ଲେଖିଛି ।

ଘ) କିଏ କହିବାରୁ କିମ୍ବା କାହା ଆଦେଶରେ ପୋଥି ଲେଖିଛି ।

ଙ) ଲେଖନକାର କାହାନିମନ୍ତେ ଉପହାର ଦେବାକୁ, କିଏ ପଢ଼ିବା ପାଇଁ କିମ୍ବା ଶୁଣିବା ପାଇଁ, କାହାର ସଂଗ୍ରହ ପାଇଁ ଲେଖିଥିଲେ ତାହାର ସୂଚନା ଦେଇଥାଏ ।

ଚ) ଲେଖନକାର ନିଜର ପଢ଼ିବା ପାଇଁ ବା ସଂଗ୍ରହ ଉଦ୍ଦେଶ୍ୟରେ ଲେଖିଥିଲେ ସମସ୍ତ ସମୟରେ ତାହାର ମଧ୍ୟ ଆଭାସ ଦେଇଥାଏ ।

ଛ) କୌଣସି ଜିନଷର ବଦଳରେ ମଧ୍ୟ ଲେଖିଥାଇ ପାରେ ।

ଜ) ପୋଥିର ପ୍ରଚାର, କୀର୍ତ୍ତି କିମ୍ବା ଧର୍ମଭାବନା ଉଦ୍ଦେଶ୍ୟରେ ମଧ୍ୟ ଲେଖିଥିବାର ସମ୍ଭାବନା ।

ଝ) ନିଜ ଗୁରୁଙ୍କ ଉଦ୍ଦେଶ୍ୟରେ ଲେଖିଥିବାର ସୂଚନା ମଧ୍ୟ ମିଳେ । ଗୁରୁ କହିଲେ ଶିକ୍ଷାଗୁରୁ, ଦୀକ୍ଷାଗୁରୁ, ଅଧ୍ୟାତ୍ମପଥ ନିର୍ଦ୍ଦେଶକ ଗୁରୁ ସମ୍ପ୍ରଦାୟ ବିଶେଷର ପ୍ରବର୍ତ୍ତକଗୁରୁ କିମ୍ବା ପିତା ଗୁରୁଙ୍କୁ ବୁଝାଏ । ତେଣୁ କେତେକ ଲେଖନକାରଙ୍କର ଏକାଧିକ ଗୁରୁଙ୍କର ନାମ ବିଭିନ୍ନ ପୋଥିରେ ଦେଖିବାକୁ ମିଳେ ।

କେତେକ ଲେଖନକାର ପୋଥି ଲିଖନର ଉଦ୍ଦେଶ୍ୟ ସମ୍ପର୍କରେ ସୂଚନା ଦେଇ ପୁଷ୍ପିକାରେ ଲେଖିଥାନ୍ତି:—

"ବିଦୁଷାମୁପକାରାୟାମୁନା ଗୃଲେଖି ପୁସ୍ତକମ୍
ନ୍ୟୂନାଧିକଂ ଗୃହ୍ୟ ଯତ୍ର ଶୋଧୟନ୍ତୁ ବିବେକିନଃ ।"

ଅର୍ଥାତ୍ ବିଦ୍ୱାନମାନଙ୍କ ଉପକାରାର୍ଥେ ଏହି ପୁସ୍ତକ ଲେଖା ଯାଇଅଛି । ଯଦି ଏଥିରେ କିଛି ନ୍ୟୂନ ବା ଅଧିକ ପଦଥାଏ ତେବେ ବିବେକୀମାନେ ସେଗୁଡ଼ିକ ପରିଶୋଧନ କରି ପଢ଼ିବା ନିମନ୍ତେ ଅନୁରୋଧ' । (୨)

---

୨) ଆଲୋଚନା —ଶ୍ରୀ ନୀଳମଣି ମିଶ୍ର, ୧୯୭୭, ପୃ. ୧୪

ଏଭଳି ଉଦ୍ଦେଶ୍ୟ ଜ୍ଞାପନ ବିଭିନ୍ନ ପୋଥିରେ ଥିଲେ ମଧ୍ୟ ଅଧିକାଂଶ ଓଡ଼ିଆ ପୋଥିରେ ଏହା ଭିନ୍ନ ରୂପରେ ଉଲ୍ଲେଖ ଥିବାର ଦେଖିବାକୁ ମିଳେ । କେତେକ ଓଡ଼ିଆ ପୋଥିର ପୁଷ୍ପିକାରେ ସଂସ୍କୃତ ଶ୍ଳୋକ ବିକୃତ ରୂପେ ପ୍ରଦତ୍ତ ହୋଇଥିବା ବେଳେ କେତେକରେ "ହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ସୁଧାରି ଗାଇବ, ଲେଖନକାରର ଦୋଷ ନ ଧରିବ" ବୋଲି ଓଡ଼ିଆରେ ଉଲ୍ଲେଖ କରାଯାଇଥାଏ ।

ଏହି ଉଦ୍ଦେଶ୍ୟ ଜ୍ଞାପନ ବେଳେ ଲେଖନକାରର ବିନମ୍ରତା ଜଣାପଡ଼ିବା ସଙ୍ଗେ ସଙ୍ଗେ ପାଠ ବିକୃତିର କାରଣ ସମ୍ପର୍କରେ ମଧ୍ୟ ଆଭାସ ମିଳିଯାଏ ।

ମୋଟ ଉପରେ ଉପର୍ଯ୍ୟୁକ୍ତ ପ୍ରକାରେ ସମସ୍ତ ବହିଃସାକ୍ଷ୍ୟ ପର୍ଯ୍ୟାଲୋଚନା କରିବା ଦ୍ୱାରା ପୋଥିଟିର ରୂପ, ସମୟ, ପ୍ରାପ୍ତିସ୍ଥାନ, ଲେଖନକାର ସମସାମୟିକ ଇତିହାସ ସମ୍ପର୍କରେ ସ୍ପଷ୍ଟ ପରିଚୟ ମିଳିଥାଏ । ତେଣୁ ପୋଥିର ବହିଃସାକ୍ଷ୍ୟ ପର୍ଯ୍ୟାଲୋଚନା କରିବା ଏକାନ୍ତ ଆବଶ୍ୟକ । ଏହି ସମସ୍ତ ବହିଃସାକ୍ଷ୍ୟ ନିର୍ଦ୍ଦିଷ୍ଟ ପୋଥି ଉପରେ ନିର୍ଭର କରି ପର୍ଯ୍ୟାଲୋଚନା କରିବାକୁ ହୁଏ ।

## ଅନ୍ତଃସାକ୍ଷ୍ୟ

ବହିଃସାକ୍ଷ୍ୟର ପର୍ଯ୍ୟାଲୋଚନା ନିମନ୍ତେ ଏକାଧିକ ପୋଥିର ଉପାଦେୟତା ନଥିଲେ ମଧ୍ୟ ଅନ୍ତଃସାକ୍ଷ୍ୟର ପର୍ଯ୍ୟାଲୋଚନା ନିମନ୍ତେ ଏକାଧିକ ପୋଥିର ଆବଶ୍ୟକତା ରହିଛି । ତେଣୁ ଏକାଧିକ ପୋଥି ପଢ଼ିବା ପରେ ବା ତୁଳନାତ୍ମକ ଆଲୋଚନା କଲେ ଯେଉଁ ବିଚାର ଆସେ ତାକୁ 'ଅନ୍ତଃସାକ୍ଷ୍ୟ' କହନ୍ତି ।

ଏହି ଅନ୍ତଃସାକ୍ଷ୍ୟ ମଧ୍ୟରେ ସଂଯୋଜନା ଓ ପରିତ୍ୟାଗକୁ ବିବେଚନା କରାଯାଏ । ପୋଥି ମଧ୍ୟରେ ସଂଯୋଜନା ସମାନ ସ୍ୱଷ୍ଟାରେ ସାଧାରଣତଃ ହୁଏ ନାହିଁ । କାରଣ ସଂଯୋଜନାକାରୀ ଓ ଗ୍ରନ୍ଥକାର ଏକ ବ୍ୟକ୍ତି ନ

ହୋଇଥିବାରୁ ଦୁହିଁଙ୍କ ଭାଷାରେ କେତେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ । କେବଳ ସେତିକି ନୁହେଁ ସମସ୍ତ ସମୟରେ ସଂଯୋଜନା ସ୍ଥଳ ବିଶେଷରେ ଏକାଧିକ ପ୍ରକାରର ହୋଇଥିବାରୁ କାଏ କାହାଦ୍ୱାରା ପ୍ରଭାବିତ ହୋଇଛି ତାହା ଜାଣିବା ମଧ୍ୟ କଷ୍ଟକର ହୁଏ ।

ଯଦି ଗୋଟିଏ ସ୍ଥଳରେ କିଛି ଅଂଶ ପରିତ୍ୟାଗ ହୋଇଥାଏ ତେବେ ତାହା ଉପରେ ନିର୍ଭର କରି ନକଲ ହୋଇଥିବା ସମସ୍ତ ଅନୁଲିପିକୁ ଏକ ବଂଶ ବା ପରିବାରର ଅନ୍ତର୍ଭୁକ୍ତ କରାଯାଇପାରେ । ଏହା ବଂଶବୃକ୍ଷ ନିର୍ମାଣରେ ମଧ୍ୟ ଯଥେଷ୍ଟ ସହାୟକ ହୁଏ ।

ଅନ୍ତଃସାକ୍ଷ୍ୟର ପର୍ଯ୍ୟାଲୋଚନା ସମୟରେ ଗୋଟିଏ ଗୋଟିଏ ଶବ୍ଦକୁ ସମାନ ଭାବରେ ପ୍ରୟୋଗ ହୋଇ ନଥିବାର ଦେଖିବାକୁ ମିଳେ । ଏହି ପ୍ରୟୋଗ ବେଳେ ନକଲକାର ପର୍ଯ୍ୟାୟବାଚୀ ଶବ୍ଦକୁ ସାଧାରଣ ଭାବରେ ନିଅନ୍ତି । ଏହାଦ୍ୱାରା ସମସ୍ତ ସମୟରେ ପ୍ରକୃତ ଅର୍ଥ ନିର୍ଦ୍ଧାରଣରେ ଅନ୍ତରାୟ ସୃଷ୍ଟି ହୁଏ । ଉଦାହରଣ ସ୍ୱରୂପ ଗୋଟିଏ ସ୍ଥାନରେ 'ମାଠ ନାସା' ଶେପଟା ନାକ ଅର୍ଥରେ ପ୍ରୟୋଗ ହୋଇଛି । ନକଲକାର 'ମାଠ' ଶବ୍ଦଟିର ଅର୍ଥ ବୁଝି ନଥିବାରୁ 'ମାଠ' ବଦଳରେ 'ମୂଳ' ଶବ୍ଦର ପ୍ରୟୋଗ କରି ଦିଅନ୍ତି ।

ସ୍ଥଳ ବିଶେଷରେ ନକଲକାର ବିଭିନ୍ନ ମତ ଶାସ୍ତ୍ରର ଉଲ୍ଲେଖକୁ ସଠିକ୍ ଭାବରେ ନବୁଝି ସାମାନ୍ୟ ବଦଳାଇ ଦେବା ଦ୍ୱାରା ଏହାର ଅର୍ଥ ପରିବର୍ତ୍ତନ ଘଟେ । ଉଦାହରଣ ସ୍ୱରୂପ ଗୋଟିଏ ସ୍ଥଳରେ 'ସାଂଖ୍ୟ ଯୋଗୀଙ୍କର ମତ' ଲେଖାଅଛି । ନକଲକାର 'ସାଂଖ୍ୟ' ଶବ୍ଦକୁ ଠିକ୍ ରୂପେ ନବୁଝି 'ସଂଖ୍ୟା' ବା 'ସଖା' ଶବ୍ଦ ପ୍ରୟୋଗ କରିବା ଦ୍ୱାରା ପାଠର ଅନ୍ୟ ଏକ ଅର୍ଥ ଆସିଥାଏ । ଏହା ଗୋଟିଏ ଅର୍ଥ ପ୍ରଦାନ କଲେ ମଧ୍ୟ ଗ୍ରନ୍ଥ କର୍ତ୍ତାର ମୂଳ ଉଦ୍ଦେଶ୍ୟ ତଥା ଭାବ ପରିବେଷଣରେ ଅନ୍ତରାୟ ସୃଷ୍ଟି କରେ ।

ତେଣୁ ଅନୁଲିପି ପ୍ରସ୍ତୁତ କରିବା ପରେ ବହିଃସାକ୍ଷ୍ୟ ଓ ଅନ୍ତଃସାକ୍ଷ୍ୟର ପର୍ଯ୍ୟାଲୋଚନା କରିବା ଏକାନ୍ତ ଆବଶ୍ୟକ । ଏହା ପୋଥିର ସମୟ

ନିର୍ଦ୍ଧାରଣ—ବଂଶବୃକ୍ଷ ନିର୍ମାଣ ସହିତ ସୁସମ୍ପାଦନା ତଥା ପାଠାଲୋଚନା ନିମନ୍ତେ ଯଥେଷ୍ଟ ସହାୟକ ହୋଇଥାଏ ।

ଏହି ପର୍ଯ୍ୟାଲୋଚନା ପରେ ସମ୍ପାଦକ ପାଇଥିବା ବା ସଂଗ୍ରହ କରିଥିବା ପୋଥି/ଅନୁଲିପି ଗୁଡ଼ିକର ଗୋଟିଏ ସୂଚୀ ପ୍ରସ୍ତୁତ କରିବା ଦରକାର । ଏହି ସୂଚୀ ପ୍ରସ୍ତୁତ ବେଳେ ପୋଥି/ଅନୁଲିପି ଗୁଡ଼ିକୁ କୌଣସି ନିର୍ଦ୍ଦିଷ୍ଟ ସଙ୍କେତ ଚିହ୍ନ ପ୍ରଦାନ କରି ତାର ପାଖରେ ପୋଥିର ସମୟ ସୂଚନା ଦେବା ଦରକାର । ଏହି ସମୟ ସୂଚନା ପୋଥିର ପୁଷ୍ପିକାରେ ଥାଏ । ଯେଉଁ ପୋଥିରେ ସମୟ ସୂଚନା ନଥିବ ତାର ଭାଷା, ଲିପି ଆଦିକୁ ଅନୁଧ୍ୟାନ କରି ଗୋଟିଏ ଆନୁମାନିକ ସମୟ ନିର୍ଦ୍ଧାରଣ କରିବାକୁ ହେବ । ଏହି ସମୟ ସୂଚନା ସଙ୍କେତ ଚିହ୍ନର ଦକ୍ଷିଣ ପାର୍ଶ୍ୱରେ ଦେବା ଦରକାର । ଉଦାହରଣ ସ୍ୱରୂପ ଗୋଟିଏ ପୋଥି ବା ଅନୁଲିପିର ସଙ୍କେତ ଚିହ୍ନ 'କ' ଦିଆଯାଇଛି । ଏହି ପୋଥି ବା ଅନୁଲିପିର ସମୟ ସପ୍ତଦଶ ଶତାବ୍ଦୀ ବୋଲି ପୁଷ୍ପିକାରୁ ଜଣାଯାଉଛି । ତେବେ ଏହି 'କ' ଚିହ୍ନକୁ ଅନୁଲିପିର ଦକ୍ଷିଣ ପାର୍ଶ୍ୱରେ ଉଲ୍ଲେଖ କରି ତା'ପାଖରେ ୧୭ ଲେଖାଯିବ । ଅର୍ଥାତ୍ ତାକୁ 'କ-୧୭' ଏହିପରି ଭାବରେ ଲେଖିବା ଆବଶ୍ୟକ । ଏ ସମସ୍ତ କାର୍ଯ୍ୟ କରିବା ଦ୍ୱାରା ତାହା ସମ୍ପାଦନା କାର୍ଯ୍ୟରେ ବିଶେଷ ଭାବେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ପୋଥିର ସମ୍ପର୍କ ଓ ବଂଶବୃକ୍ଷ ନିର୍ମାଣରେ ଯଥେଷ୍ଟ ସହାୟକ ହୋଇ ଥାଏ ।

—※—

# ପାଣ୍ଡୁଲିପି ସଂପାଦକର ଯୋଗ୍ୟତା

ପାଣ୍ଡୁଲିପି ସମ୍ପାଦନା ଏକ କଠିନ କାର୍ଯ୍ୟ । ତେଣୁ ଯେ କୌଣସି ବ୍ୟକ୍ତି ଏ କାର୍ଯ୍ୟ କରିବା ନିମନ୍ତେ ଆଗ୍ରହୀ ହୋଇ କାର୍ଯ୍ୟ କଲେ ଶୁଦ୍ଧ ପାଠ ନିର୍ଣ୍ଣୟ କରିବା ସମ୍ଭବପର ହୋଇପାରେନି । କାରଣ ଆଗ୍ରହୀ ବା ବିଦ୍ୱାନ ହେଲେ ମଧ୍ୟ ଏହି କାର୍ଯ୍ୟ ସହଜ ତଥା ସରଳ ଭାବରେ ସମ୍ପୂର୍ଣ୍ଣ ହୋଇପାରେ ନାହିଁ । ତେଣୁ ପାଣ୍ଡୁଲିପିର ସମ୍ପାଦକ ଜଣେ ବୌଦ୍ଧିକ ବ୍ୟକ୍ତି ହୋଇଥିବାରୁ ତାଙ୍କର ଅଗାଧ ଶବ୍ଦ ପାଣ୍ଡିତ୍ୟ ଓ ବୈଜ୍ଞାନିକ ଦୃଷ୍ଟିକୋଣ ସହିତ ନିମ୍ନଲିଖିତ ଯୋଗ୍ୟତା ରହିବା ଏକାନ୍ତ ଆବଶ୍ୟକ ।

### ଅଭିରୁଚି ବା ଅଭିଳାଷ

ପାଣ୍ଡୁଲିପି ସମ୍ପାଦକଙ୍କର ପୋଥି ସଂଗ୍ରହ କ୍ଷମତା ଓ ବିଭିନ୍ନ ପ୍ରକାର ପୋଥି ଅଧ୍ୟୟନ ନିମନ୍ତେ ଗଭୀର ଆଗ୍ରହ ତଥା ଅଭିଳାଷ ରହିବା ଦରକାର । ଏହା ଦ୍ୱାରା ସେ ସମ୍ପାଦନା ନିମନ୍ତେ ଗ୍ରହଣ କରୁଥିବା ପୋଥିଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବରେ ଅଧ୍ୟୟନ ତଥା ଅନୁଧ୍ୟାନ କରିବାକୁ ସକ୍ଷମ ହୋଇପାରିବେ ।

### ଲିପିଜ୍ଞାନ

ଭାଷାର କ୍ରମବିକାଶ ସଙ୍ଗେ ସଙ୍ଗେ ଲିପିର ମଧ୍ୟ ଐତିହାସିକ ପରିବର୍ତ୍ତନ ଘଟିପାରିଛି । ଏହି ଦୃଷ୍ଟିରୁ ପାଣ୍ଡୁଲିପି ସମ୍ପାଦକଙ୍କର ଲିପି ଉପରେ ସମ୍ପୂର୍ଣ୍ଣ ଜ୍ଞାନ ରହିବା ଉଚିତ । ଏହି ଜ୍ଞାନ ଦ୍ୱାରା ସେ ପାଣ୍ଡୁଲିପିର ସମୟ ବିବେଚନା କରିବା ସଙ୍ଗେ ସଙ୍ଗେ ସେ ସମୟର ଲିପି ଦୃଷ୍ଟିରୁ ଏହାକୁ ଅନୁଧ୍ୟାନ କରିବା ସହଜ ସାଧ୍ୟ ହୋଇପାରିବ । କେବଳ ସେତିକି ନୁହେଁ ବିଭିନ୍ନ ଅଞ୍ଚଳ ଭେଦରେ ଲିପିର ପରିବର୍ତ୍ତିତ ଚିହ୍ନ ପ୍ରୟୋଗ ଦୃଷ୍ଟିରୁ ମଧ୍ୟ ଲିପିକୁ ଅନୁଧ୍ୟାନ

କରିବା ସହଜ ସାଧ୍ୟ ହେବ । ତେଣୁ ପାଣ୍ଡୁଲିପି ସମ୍ପାଦକ ଏ ସମସ୍ତ ଘଟଣାପ୍ରତି ସଚେତନ ରହିବା ଏକାନ୍ତ ଆବଶ୍ୟକ ।

ଭାଷାଜ୍ଞାନ

ପାଣ୍ଡୁଲିପି ସମ୍ପାଦକଙ୍କର ସମ୍ପୂର୍ଣ୍ଣ ଭାଷା ଜ୍ଞାନ ରହିବା ଦରକାର । ବ୍ୟାକରଣ ଜ୍ଞାନ ସହ ଧ୍ୱନି ଜ୍ଞାନ ଓ ଭାଷାଜ୍ଞାନର ଅନ୍ତର୍ଗତ ବିଭିନ୍ନ ପ୍ରକାର ଐତିହାସିକ ପରିବର୍ତ୍ତନକୁ ଜାଣି ପାରିଲେ, ସମ୍ପାଦକ ପାଣ୍ଡୁଲିପିରେ ପ୍ରଯୁକ୍ତ ମୂଳଶବ୍ଦ ଓ ବାକ୍ୟରଚନା ପ୍ରଣାଳୀକୁ ନିର୍ଣ୍ଣୟ କରିବା ସହଜ ହେବ । ଫଳରେ ଏହା ଗ୍ରନ୍ଥଟିର ଅନୁଶୀଳନ ତଥା ପରିଶୀଳନ ନିମନ୍ତେ ଯଥେଷ୍ଟ ସହାୟକ ହୋଇପାରିବ ।

ଦେଶର ଇତିହାସ, ଭୂଗୋଳ ତଥା ସାଂସ୍କୃତିକ ବିବର୍ତ୍ତନର ସବିଶେଷଜ୍ଞାନ

ପ୍ରାଚୀନ ଭାରତ ତଥା ଓଡ଼ିଶାର ଐତିହାସିକ, ଭୌଗୋଳିକ, ସାଂସ୍କୃତିକ ତଥା କିମ୍ବଦନ୍ତୀ ବିଷୟକ ଆଦି ଜ୍ଞାନ ସମ୍ପାଦକର ରହିବା ଆବଶ୍ୟକ । ସମ୍ପାଦକ ଏସମସ୍ତ ବିଷୟ ପ୍ରତି ସଚେତନ ରହିଲେ ପୋଥିର ରଚନାକାଳ, ସାଂସ୍କୃତିକ ତଥା ବିଭିନ୍ନ ଘଟଣାଦି ସମ୍ବନ୍ଧରେ ଥିବା ତ୍ରୁଟିପୂର୍ଣ୍ଣ ବିବରଣୀକୁ ସଜାଡ଼ି ପାରିବା ନିମନ୍ତେ ସମ୍ଭବପର ହୋଇପାରିବ ।

ଚିତ୍ରକଳା ଜ୍ଞାନ

ଚିତ୍ରକଳାର ଐତିହାସିକ ବିବର୍ତ୍ତନ ସମ୍ପର୍କରେ ପାଣ୍ଡୁଲିପି ସମ୍ପାଦକ ସମ୍ପୂର୍ଣ୍ଣ ଜ୍ଞାନ ଉପଲବ୍ଧ କରିବା ଏକାନ୍ତ ଆବଶ୍ୟକ । କାରଣ କେତେକ ପୋଥିରେ ମୂଳପାଠ ସହିତ କେତେଗୁଡ଼ିଏ ଚିତ୍ର ଅଙ୍କନ କରାଯାଇଥାଏ । ଚିତ୍ରକଳା ଉପରେ ପାଣ୍ଡୁଲିପି ସମ୍ପାଦକଙ୍କର ସମ୍ପୂର୍ଣ୍ଣ ଜ୍ଞାନଥିଲେ, ସେ ଏହାର ମାଧ୍ୟମରେ ପାଣ୍ଡୁଲିପିଟିର ସମୟ ନିର୍ଦ୍ଧାରଣ କରିବାକୁ ସମର୍ଥ ହୋଇପାରିବେ । ଏପରିକି କେତେକ ସ୍ଥଳରେ ଚିତ୍ର ଦ୍ୱାରା ଦିଆଯାଇଥିବା ପାଠ ସମ୍ପର୍କିତ ସଙ୍କେତ ତଥା କେତେକ ଶବ୍ଦର ସରଳ ଅର୍ଥକୁ ବୁଝିବା ମଧ୍ୟ ସମ୍ଭବପର ହୋଇଥାଏ ।

ହସ୍ତଲିପି ପରୀକ୍ଷଣ କ୍ଷମତା

ବିଭିନ୍ନ ସମୟରେ ପାଣ୍ଡୁଲିପି ସଂପାଦନା ବେଳେ ହସ୍ତଲିପିର ପ୍ରାଚୀନତା ପରୀକ୍ଷା କରିବାର ଆବଶ୍ୟକତା ଉପଲବ୍‌ଧ ହୁଏ । କାରଣ ସମୟାନୁକ୍ରମେ ଲିପି ଭୂର୍ଜପତ୍ର, ତାଳପତ୍ର, କାଗଜ ଓ କାଳି ଆଦି ସାମଗ୍ରୀର ଉପଯୋଗରେ ପାଣ୍ଡୁଲିପି ପ୍ରସ୍ତୁତ କରାଯାଇଥାଏ । ତେଣୁ ସଂପାଦକ ହସ୍ତ-ଲିପିକୁ ପରୀକ୍ଷା କରିବା ଦ୍ୱାରା ପାଣ୍ଡୁଲିପିର ଶୁଦ୍ଧତା ନିର୍ଣ୍ଣୟ କରିବା ସମ୍ଭବପର ହୋଇପାରିବ ।

ଜ୍ଞାନୀ ଓ ବିବେକବାନ

ପାଣ୍ଡୁଲିପିର ସଂପାଦକ ଜ୍ଞାନୀ ତଥା ବିବେକବାନ ହେବା ଏକାନ୍ତ ଆବଶ୍ୟକ । କାରଣ ପାଠକୁ ଭଲରୂପେ ବୁଝି ଗ୍ରନ୍ଥରେ ସଂଯୋଜିତ ହୋଇଥିବା ବିଭିନ୍ନ ପଦକୁ ଉପଯୁକ୍ତ ଭାବେ ତର୍ଜମା କରି ପାଠରେ ନିର୍ବାଚିତ ଶବ୍ଦକୁ ପ୍ରୟୋଗ କରିପାରିବା ସମ୍ଭବପର ହେବ । ଏହାକୁ ସଂପାଦକର ମାନସିକ କ୍ଷମତା ମଧ୍ୟ କୁହାଯାଇପାରେ ।

ଶାରୀରିକ କ୍ଷମତା

ପାଣ୍ଡୁଲିପି ସଂପାଦକର ଅଙ୍ଗୁଳି ଓ ଚକ୍ଷୁ ଉପଯୁକ୍ତ ଭାବେ କାର୍ଯ୍ୟ କରୁଥିବା ଆବଶ୍ୟକ । ଯାହାଫଳରେ ସେ ପୋଥିରେ ଥିବା ଲିପି ବା ପାଠକୁ ଠିକ୍ ରୂପେ ପଢ଼ି ଉଲ୍ଲେଖ କରିବାରେ କୌଣସି ଅସୁବିଧାର ସମ୍ମୁଖୀନ ହୋଇପାରିବ ନାହିଁ । ଏତଦ୍ ବ୍ୟତୀତ ତାର ଶରୀର ଯଦି ସୁସ୍ଥ ରହେ ତେବେ ସେ ଦୀର୍ଘ ସମୟ ଏହି କାର୍ଯ୍ୟରେ ନିୟୋଗ କରିବା ପାଇଁ ସକ୍ଷମ ହେବ ।

ମାନସିକ ସୁସ୍ଥତା

ପାଣ୍ଡୁଲିପି ସଂପାଦନା ସମୟରେ ସଂପାଦକଙ୍କୁ ବିଭିନ୍ନ ଶବ୍ଦ ଉପରେ ବହୁ ସମୟ ଧରି ଚିନ୍ତା କରିବାକୁ ପଡ଼େ । ତେଣୁ ମାନସିକ ସୁସ୍ଥତା ଏଥିପାଇଁ ଏକାନ୍ତ ଅପରିହାର୍ଯ୍ୟ । ସୁସ୍ଥମାନସ ତଥା ଶାନ୍ତିମୂର୍ତ୍ତି ପରିବେଶରେ

ଯଦି ସଂପାଦକ ନିଜକୁ ସଂପାଦନା କାର୍ଯ୍ୟରେ ବିନିଯୋଗ କରେ ତେବେ ତା'ର କାର୍ଯ୍ୟ ସୁଷ୍ଠୁ ରୂପେ ସମାହିତ ହୋଇପାରିବ ।

ଆର୍ଥିକ ପରିସ୍ଥିତି

ପାଣ୍ଡୁଲିପି ସଂପାଦକର ଆର୍ଥିକ ପରିସ୍ଥିତି ଯେତେ ସ୍ୱଚ୍ଛଳ ରହିବ, ସେ ସଂପାଦନା କାର୍ଯ୍ୟ ନିମନ୍ତେ ନିଜକୁ ସେତିକି ବିନିଯୋଗ କରିପାରିବ । କାରଣ ଅର୍ଥ ଚିନ୍ତାରେ ସେ ଯେତିକି ସମୟ ନଷ୍ଟ କରିଦିଅନ୍ତା ସେତିକି ସମୟ ସଂପାଦନା କାର୍ଯ୍ୟରେ ଲଗାଇପାରିବ । କେବଳ ଏତିକି ନୁହେଁ ସଂପାଦନା ପାଇଁ ଆବଶ୍ୟକ ହେଉଥିବା ପୋଥି, ପୋଥିର ଅନୁଲିପି ପ୍ରସ୍ତୁତି ଆଦି ନିମନ୍ତେ ଯେଉଁ ଖର୍ଚ୍ଚ ହେବ ତାହାକୁ ମଧ୍ୟ ସେ ସୁବିଧାରେ କରିପାରିବ ।

ଯଶପ୍ରାପ୍ତି ନିମନ୍ତେ ଅନାଗ୍ରହ

ସଂପାଦକର ଯଶ ପ୍ରାପ୍ତି ନିମନ୍ତେ ବିଶେଷ ଆଗ୍ରହ ରହିବା ଅନାବଶ୍ୟକ । କାରଣ ଯଶପ୍ରାପ୍ତିର ମୋହରେ ସେ ପାଣ୍ଡୁଲିପିକୁ ଶିଘ୍ର ସମାପ୍ତ କରିବାକୁ ଚେଷ୍ଟା କଲେ ଉପଯୁକ୍ତ ଭାବରେ ସଂପାଦନା କାର୍ଯ୍ୟ କରିପାରିବ ନାହିଁ ।

ସଂପାଦନା ବିଧି ସଂପର୍କିତ ଜ୍ଞାନ

ପାଣ୍ଡୁଲିପି ସଂପାଦକର ସଂପାଦନା ସଂପର୍କିତ ବିଧି ଉପରେ ସମ୍ପୂର୍ଣ୍ଣ ଜ୍ଞାନ ରହିବା ଦରକାର । କାରଣ ସେ ସଂପାଦନା ବିଧିର ଉପଯୁକ୍ତ ସୋପାନକୁ ଅନୁସରଣ କରି ସଂପାଦନା କାର୍ଯ୍ୟ କଲେ କାର୍ଯ୍ୟଟି ସୁଷ୍ଠୁ ତଥା ଶୁଦ୍ଧ ରୂପେ ସମାହିତ ହୋଇପାରିବ । ଏଥିପାଇଁ ସେ ସଠିକ୍ ପାଠଗ୍ରହଣ, କରିବା ସଙ୍ଗେ ସଙ୍ଗେ ଗ୍ରନ୍ଥଟିର ରଚନା ଶୈଳୀ ଆଦି ସଂପର୍କରେ ଅବଗତ ରହିବା ଦରକାର ।

ପାଣ୍ଡୁଲିପିକୁ ସଂପାଦନା କରିବା ନିମନ୍ତେ ଆଗ୍ରହୀ ବ୍ୟକ୍ତି ଯଦି ଉପରୋକ୍ତ ଯୋଗ୍ୟତା ସଂପନ୍ନ ହୋଇଥାନ୍ତି ତେବେ ସେ ପାଣ୍ଡୁଲିପିର ସଂପାଦନା କାର୍ଯ୍ୟକୁ ଶୁଦ୍ଧ ରୂପେ କରିବା ସମ୍ଭବପର ।

## ସଂପାଦକ ଓ ସଂକଳକ

ସଂପାଦକ ଓ ସଂକଳକ ମଧ୍ୟରେ କେତେକ ପ୍ରଭେଦ ପରିଲକ୍ଷିତ ହୁଏ । ସଂକଳନକାରୀଙ୍କୁ 'ସଂକଳକ' କୁହାଯାଏ । ସଂକଳନର ପ୍ରାଣଶକ୍ତି ହେଉଛି ସଂପାଦନା । ସଂପାଦନାର ସ୍ପର୍ଶରେ ସଂକଳିତ ବସ୍ତୁ ଅତ୍ୟନ୍ତ ଜ୍ୟୋତିଷ୍ମାନ୍ ହୋଇଉଠେ । ଅର୍ଥାତ୍ ଗୋଟିଏ ବହୁପ୍ରସୂ ଲେଖକର ପ୍ରତିନିଧି ସ୍ଥାନୀୟ ଶ୍ରେଷ୍ଠ ସାରସ୍ୱତ କୃତିଗୁଡ଼ିକୁ ଏକତ୍ର କରି ପାଠକ ସମ୍ମୁଖରେ ଉପସ୍ଥାପନା କରାଇବା କର୍ମ ହେଉଛି ସଂକଳକର । ଏଥିରେ ତାଙ୍କୁ ସଂପାଦକ ଭଳି ଗଭୀର ଅଧ୍ୟୟନ ତଥା ଅନୁଧ୍ୟାନର ଆବଶ୍ୟକତା ପଡ଼େ ନାହିଁ । ସେ କେବଳ ଲେଖକ ଓ ପାଠକ ମଧ୍ୟରେ ମଧ୍ୟସ୍ଥି ରୂପେ କାର୍ଯ୍ୟ କରେ । ଉଦାହରଣ ରୂପେ ଗୌରୀଶଙ୍କର ରାୟ, ଗୋବିନ୍ଦ ରଥ, ରତ୍ନାକର ଗର୍ଗବଟୁ ଆଦିଙ୍କର ପ୍ରାଚୀନ ପୋଥି ସଂକଳନକୁ ଆଧୁନିକ ଯୁଗରେ ମଧ୍ୟ ଶିବପ୍ରସାଦ ଦାଶଙ୍କ ଦ୍ୱାରା ସଂକଳିତ 'ଗଙ୍ଗାଧର ପତ୍ରାବଳୀ (୧୯୫୫)କୁ ଏକ ସଂକଳନ ରୂପେ ଗ୍ରହଣ କରାଯାଇପାରେ । ଏଥିରେ ସଂକଳକ ପାଠକ ନିକଟରେ ଲେଖକର କୃତିକୁ ପରିଚୟ କରାଇବା ନିମନ୍ତେ ଚେଷ୍ଟିତ ଥିବାପରି ଜଣାପଡ଼େ ।

କିନ୍ତୁ ସଂପାଦକ ସାହିତ୍ୟକୁ ଜୀବନ ଚର୍ଯ୍ୟାର ପାଥେୟ ରୂପେ ପରିଚୟ କରାଇବା ନିମନ୍ତେ ବେଶ ଆଗ୍ରହୀ ଥାଏ । ଏଥିପାଇଁ ସେ ଲେଖକର ଚିନ୍ତାଧାରାକୁ ତାଙ୍କର ମାନସ ଅନ୍ତର୍ବେଦୀରୁ ଉତ୍ତୋଳିତ କରି ବିଶ୍ୱମାନସର ମହାବେଦୀ ଆଡ଼କୁ ନେଇଯାଏ । ଅର୍ଥାତ୍ ସ୍ରଷ୍ଟାର ସୃଷ୍ଟି ମଧ୍ୟରେ ଥିବା ଆବେଦନ ଶକ୍ତିର ବିଶ୍ଳେଷଣ, ପାରସ୍ପରିକ ସଂପର୍କ, ମୌଳିକତାର ଆଲୋଚନା ଓ ତତ୍କାଳୀନ ସାଂସ୍କୃତିକ ବାତାବରଣ ଆଦି ସଂପାଦନା ମାଧ୍ୟମରେ ବିଶ୍ଳେଷଣ ଲାଭ କରିବା ସଙ୍ଗେ ସଙ୍ଗେ ସଂପାଦିତ ବସ୍ତୁର ଅଦେଖା ଆମୃତର ଆଡ଼କୁ ପାଠକଙ୍କୁ ଟାଣିନିଏ । ଏହା ଦ୍ୱାରା ପାଠକ ନିଜର ବସ୍ତୁର-ବୋଧକୁ ତନ୍ମଧ୍ୟରେ ପ୍ରବେଶ କରାଇବାରେ ସଫଳ ହୋଇଥାଏ । ଉଦାହରଣ ସ୍ୱରୂପ ଦେବପ୍ରସନ୍ନ ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ 'କବିଲିପି' (୧୯୫୭)କୁ ନିଆଯାଇପାରେ ।

ସଂପାଦନା ନିମନ୍ତେ ସଂପାଦକର ବିଶେଷ ଦୃଷ୍ଟି କୋଣ ରହିବା ଦରକାର । ଏହି ବିଶେଷ ଦୃଷ୍ଟିକୋଣ ନିମନ୍ତେ ତାର ବହୁପାଠିତା, ନିରପେକ୍ଷତା ଓ ମୂଲ୍ୟାୟନ କୌଶଳ ନିର୍ଭର କରେ । ଫଳରେ ସ୍ରଷ୍ଟା ନିକଟରେ ତାର ସୃଷ୍ଟି ଯେତିକି ମୂଲ୍ୟାୟନ ହୋଇ ପାରିଥିଲା ସଂପାଦକ ନିକଟରେ ତାହା ଆହୁରି ପରିବ୍ୟାପ୍ତ ହେଲା । କେବଳ ସେତିକି ନୁହେଁ ସଂପାଦକ ସପାଦନା ସମୟରେ ଜଣେ ବହୁଦର୍ଶୀ ସଚେତନ ବିଦଗ୍ଧପାଠକ ତଥା ସମୀକ୍ଷକର ଭୂମିକାରେ ଅବତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ଲେଖକଙ୍କର ଚେତନାକୁ ପୁନର୍ଜୀବନ ପ୍ରଦାନ କରିବା ସଙ୍ଗେ ସଙ୍ଗେ ପ୍ରତିଷ୍ଠାର ପଥକୁ ଅନୁରଣିତ କରିପାରେ ।

ତେଣୁ ସଂକଳକ ଲେଖକ ଓ ପାଠକ ମଧ୍ୟରେ 'ସାରସ୍ୱତ ମଧ୍ୟସ୍ଥି' କରିବା ସମୟରେ ସଂପାଦକ ଲେଖକର ରଚନାକୁ ପୁନର୍ଜୀବିତ କରିବା ସଙ୍ଗେ ସଙ୍ଗେ ପ୍ରତିଷ୍ଠାର ପଥକୁ ଉନ୍ମୋଚିତ କରିପାରେ । ପରିଶେଷରେ ଏତିକି କୁହାଯାଇପାରେ ଯେ ସଂକଳନ ସମୟରେ ସଂକଳକ ବହୁ ଶ୍ରମ ସ୍ୱୀକାର କଲେ ମଧ୍ୟ ସଂପାଦକର ଶୈଳ୍ପିକ ଗୁରୁତ୍ୱ ତାହାଠାରେ ପରିଲକ୍ଷିତ ହୁଏ ନାହିଁ ।

—*—

# ପାଣ୍ଡୁଲିପି ସଂପାଦନାର ଉପଯୋଗିତା

ପାଣ୍ଡୁଲିପି ସଂପାଦନାର ମୂଳ ଉଦ୍ଦେଶ୍ୟ ହେଉଛି କୌଣସି ଗ୍ରନ୍ଥକାରର ରଚନାର ସମ୍ଭାବ୍ୟ ଶୁଦ୍ଧପାଠ ନିର୍ଣ୍ଣୟ କରିବା । ଗ୍ରନ୍ଥକାରର ସ୍ୱହସ୍ତଲିଖିତ ଗ୍ରନ୍ଥ ବିଭିନ୍ନ କାରଣରୁ ଅନୁଲିପିକାରଙ୍କ ଦ୍ୱାରା ଅନ୍ୟ ଏକ ରୂପରେ ରୂପାନ୍ତରିତ ହୋଇଥାଏ । ଏହି ରୂପାନ୍ତରିତ ରୂପ ଗୋଟିଏ ଅର୍ଥ ପ୍ରଦାନ କଲେ ମଧ୍ୟ ଗ୍ରନ୍ଥକାରର ଭାବ, ଭାଷା ତଥା ମହତ୍ତ୍ୱ ବା ଉଦ୍ଦେଶ୍ୟକୁ ପ୍ରକାଶ କରିବାରେ କେତେକ ସ୍ଥଳରେ ପ୍ରତିବନ୍ଧକ ସୃଷ୍ଟି କରେ । ଏପରିକି ଗ୍ରନ୍ଥକାରର ମହତ୍ତ୍ୱ ବା ଉଦ୍ଦେଶ୍ୟକୁ ଏଥିରୁ ଜାଣିବା କଷ୍ଟକର ହୁଏ । ତେଣୁ ଅନୁଲିପିକାର ଦ୍ୱାରା ହୋଇଥିବା ରୂପାନ୍ତରିତ ରୂପ ମଧ୍ୟରୁ ସମ୍ଭାବ୍ୟ ଶୁଦ୍ଧପାଠ ନିର୍ଦ୍ଧାରଣ କରି ତନ୍ମଧ୍ୟରୁ ଗ୍ରନ୍ଥକାରର ଉଦ୍ଦେଶ୍ୟ ଓ ମହତ୍ତ୍ୱକୁ ବୁଝିବା ହେଉଛି ପାଣ୍ଡୁଲିପି ସଂପାଦନାର ମୁଖ୍ୟ ଉପଯୋଗିତା ।

କେବଳ ସେତିକି ନୁହେଁ ଗ୍ରନ୍ଥକାର ଶବ୍ଦ ପ୍ରୟୋଗ କରିବାର ବୈଶିଷ୍ଟ୍ୟ ଓ ନିର୍ଦ୍ଦିଷ୍ଟ ଲକ୍ଷ୍ୟନେଇ ଯେଉଁ ସବୁ ଶବ୍ଦାଳଙ୍କାର ବା ଅର୍ଥାଳଙ୍କାର ପ୍ରୟୋଗ କରିଥାଏ,ତାକୁ ଜାଣିବା ନିମନ୍ତେ ଗ୍ରନ୍ଥସଂପାଦନା ଓ ପାଠାଲୋଚନାର ଉପାଦେୟତା ରହିଛି । ଏପରିକି ଗ୍ରନ୍ଥକାରର ରଚନାଶୈଳୀ, ବର୍ଣ୍ଣନା ନୈପୁଣ୍ୟ, ଛନ୍ଦ ପ୍ରୟୋଗ ଆଦି ବିଷୟରେ ସ୍ପଷ୍ଟ ସୂଚନା ପାଇବା ପାଇଁ ମଧ୍ୟ ଗ୍ରନ୍ଥ ସଂପାଦନାର ଆବଶ୍ୟକତା ହୁଏ । ଏହା କାବ୍ୟର ବିଷୟ ନିର୍ଯ୍ୟାସରେ ଅନେକ ଶୁଦ୍ଧତା ପ୍ରଦର୍ଶନ କରେ ।

ପାଣ୍ଡୁଲିପି ସଂପାଦନାର ଅନ୍ୟ ଏକ ମୁଖ୍ୟ ଉପଯୋଗିତା ବା ଉଦ୍ଦେଶ୍ୟ ହେଉଛି ଗ୍ରନ୍ଥକାରର ସମସାମୟିକ ସମାଜ, ସଂସ୍କୃତି, ଇତିହାସ, ଓ ସାହିତ୍ୟ ଆଦିକୁ ଜାଣିବା । କାରଣ ଗ୍ରନ୍ଥକାରର ରଚନା ସମସାମୟିକ

ସମାଜ, ସଂସ୍କୃତି, ଇତିହାସ ଓ ସାହିତ୍ୟ ଆଦି ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥାଏ । ଏହି ସବୁ ପ୍ରଭାବକୁ ପାଣ୍ଡୁଲିପିର ସୁସମ୍ପାଦନା ଦ୍ୱାରା ଜାଣିହୁଏ ।

କେତେକ ଗ୍ରନ୍ଥକାର ନିଜ ରଚନା ମଧ୍ୟରେ ନିଜର ସମୟ, ଅତୀତ ଇତିହାସ, ମୁନିଋଷି ପ୍ରଦତ୍ତ ନୀତି ଉପଦେଶ, ଗଳ୍ପ, ବିଭିନ୍ନ ଗ୍ରନ୍ଥର ଉଦ୍ଧୃତି; ରାଜାଙ୍କ କଥା ଓ ସେତେବେଳର ସାଂସ୍କୃତିକ ପରିସ୍ଥିତି ଆଦିକୁ ଲୁକ୍‌କାୟିତ ଭାବରେ ପରିବେଷଣ କରିଥାନ୍ତି । ଏଗୁଡ଼ିକର ସ୍ପଷ୍ଟ ଚିତ୍ର ପାଇବା ପାଇଁ ହେଲେ ଗ୍ରନ୍ଥର ଶୁଦ୍ଧପାଠ ଏକାନ୍ତ ଆବଶ୍ୟକ । ମାଟିର ମହାକବି ସାରଳାଦାସ ଓ କୃପାସିନ୍ଧୁ ବଳରାମ ଦାସଙ୍କ ରଚନାବଳୀକୁ ଏହି ଭାବଭୂମି ଉପରେ ବିବେଚନା କଲେ ଏକଥା ସ୍ପଷ୍ଟ ହୋଇଯାଏ ।

କେବଳ ସେତିକି ନୁହେଁ ଭାଷାରେ ହୋଇଥିବା ପରିବର୍ତ୍ତନ ତଥା ଅନ୍ୟଭାଷାର ପ୍ରଭାବ ଆଦି ଜାଣିବା, ଗ୍ରନ୍ଥର ସୁସମ୍ପାଦନା ଦ୍ୱାରା ସମ୍ଭବପର । ସୁସଂପାଦନା ଦ୍ୱାରା ସେ ସମୟରେ କେଉଁ କେଉଁ ଶବ୍ଦ କିପରି ଭାବରେ ପ୍ରଚଳିତ ଥିଲା ତାହା ଜାଣିବା ସମ୍ଭବପର ହୋଇଥାଏ ।

ସମୟ ସମୟରେ ଗ୍ରନ୍ଥକାର କେତେଗୁଡ଼ିଏ ଗଳ୍ପ ମାଧ୍ୟମରେ ସେ ସମୟର ପରମ୍ପରା, ଶ୍ରେଣୀ, ଜନମତ ଆଦିକୁ ପ୍ରକାଶ କରିବା ପାଇଁ ଉଦ୍ୟମ କରିଥାନ୍ତି । ଏହି ଭଳି ଗଳ୍ପମାନଙ୍କ ମଧ୍ୟରେ ସାରଳା ଦାସଙ୍କ ଜ୍ଞାନଦେଇ ମାଲୁଣୀ ବୃତ୍ତାନ୍ତ ଓ ମଧୁ ମାଳତୀ ଉପାଖ୍ୟାନ ଅନ୍ୟତମ । ସୁସମ୍ପାଦନା ଦ୍ୱାରା ଏ ସମସ୍ତର ଶୁଦ୍ଧ ରୂପ ଦେଖିବା ସଙ୍ଗେ ସଙ୍ଗେ ଗ୍ରନ୍ଥକାରଙ୍କର ଉଦ୍ଦେଶ୍ୟ ସ୍ପଷ୍ଟ ରୂପେ ଜାଣିହୁଏ ।

ତେଣୁ କୌଣସି ପାଣ୍ଡୁଲିପି ସଂପାଦନା ଦ୍ୱାରା କେବଳ ଯେ ସାହିତ୍ୟର ମାନବୃଦ୍ଧି ହୁଏ ତା ନୁହେଁ, ତାହା ସହିତ ଗ୍ରନ୍ଥକାରଙ୍କର ଅନ୍ତର୍ନିହିତ ଉଦ୍ଦେଶ୍ୟ ଓ ମହତ୍ତ୍ୱକୁ ସ୍ପଷ୍ଟ ରୂପେ ଜାଣିବା ମଧ୍ୟ ସମ୍ଭବପର ହୋଇପାରେ ।

—*—

# ପାଣ୍ଡୁଲିପି ସଂପାଦନାରେ ସମସ୍ୟା

ପାଣ୍ଡୁଲିପି ସଂପାଦନା ଏକ ମହତ୍ତ୍ୱପୂର୍ଣ୍ଣ ସାରସ୍ୱତ କର୍ମ । ତେଣୁ ସଂପାଦକ ଏହି ମହତ୍ତ୍ୱପୂର୍ଣ୍ଣ ସାରସ୍ୱତ କର୍ମକୁ ଗ୍ରହଣ କରିବା ସମୟରେ କେତେଗୁଡ଼ିଏ ମୁଖ୍ୟ ବୃଟିପ୍ରତି ଲକ୍ଷ୍ୟରଖିବା ଉଚିତ । ଯଦ୍ୱାରା ପାଠାଲୋଚନା ସମୟରେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ସୁଚାରୁ ରୂପେ ସମାହିତ କରିପାରିବ । କିନ୍ତୁ ଏଥିପାଇଁ ପାଠାନ୍ତର ଗ୍ରହଣ ସମୟରେ ମୂଳ ଲେଖାରେ କୌଣସି ବ୍ୟତିକ୍ରମ ଆଣିବା ଅନୁଚିତ । ଉଦାହରଣ ସ୍ୱରୂପ ଶ୍ରୀମଦ୍‌ଭାଗବତ ଗୀତାର ଏକାଦଶ ସ୍କନ୍ଧର ୪୧ ଶ୍ଳୋକରେ ଉଲ୍ଲେଖ ଅଛି:—

"ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ
 ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ
 ମୟା ପ୍ରମାଦାତ୍ ପ୍ରଣୟେନ ବାପି ।"

ଏଥିରେ 'ମହିମାନଂ' ଏବଂ 'ଇଦଂ' ବିଶେଷ୍ୟ ଓ ବିଶେଷଣ ରୂପେ ପ୍ରୟୋଗ ହୋଇଛି । 'ମହିମା' ଶବ୍ଦ ପୁଲିଙ୍ଗ ଓ 'ଇଦଂ' ଶବ୍ଦ କ୍ଳୀବଲିଙ୍ଗ । ବ୍ୟାକରଣ ଦୃଷ୍ଟିରୁ ଏହା ଦୋଷ ପୂର୍ଣ୍ଣ ବୋଲି ଶଙ୍କରାଚାର୍ଯ୍ୟ ଗୀତା ଭାଷ୍ୟରେ ସ୍ୱୀକାର କରି 'ଇଦଂ' ସ୍ଥାନରେ 'ଇମମ୍' ହେବା ଉଚିତ୍ କହିଥିଲେ ମଧ୍ୟ ସଂପାଦନା ନିୟମ ଦୃଷ୍ଟିରୁ 'ଇଦଂ' ପ୍ରୟୋଗ କରିଛନ୍ତି । ତେଣୁ ଏଭଳି ପ୍ରମାଦ ମଧ୍ୟ ସଂସ୍କୃତ ସାହିତ୍ୟରେ ଦେଖିବାକୁ ମିଳେ । ସ୍ରଷ୍ଟାର ଦୃଷ୍ଟି ବିଭ୍ରମ ରହିବା ଭଳି ସ୍ରଷ୍ଟାର ସୃଷ୍ଟି ବିଭ୍ରମ ଘଟିବାର ଯଥେଷ୍ଟ ସମ୍ଭାବନା ରହିଛି । ଏହି ସୃଷ୍ଟି ବିଭ୍ରମ ଦ୍ୱାରା କେତେକ ତ୍ରୁଟି ବିଚ୍ୟୁତି ଦେଖା ଦେବା ଦ୍ୱାରା ସଂପାଦନା ସମୟରେ ଶୁଦ୍ଧ ଓ ଅଶୁଦ୍ଧ ପାଠ ପରିଦୃଷ୍ଟ ହୁଏ । ତେଣୁ ପାଣ୍ଡୁଲିପି ସଂପାଦନା ସମୟରେ ସଂପାଦକ ମୂଳପାଠର ଦୁଇଟି କାର୍ଯ୍ୟ ପ୍ରତି ବିଶେଷ ଦୃଷ୍ଟି ଦେଇ ସଂପାଦନା କାର୍ଯ୍ୟରେ ଅଗ୍ରସର ହେବା ଉଚିତ୍ ।

ସେଥିରୁ ପ୍ରଥମଟି ହେଉଛି ସ୍ରଷ୍ଟାର ମୂଳରଚନାରେ ଥିବା ଅଭିବ୍ୟକ୍ତିକୁ ରଖିବାକୁ ହେବ ଏବଂ ଦ୍ୱିତୀୟଟି ହେଉଛି ଏଥିରେ ଥିବା ତଥ୍ୟର ଅନୁଶୀଳନ ପରିଶୀଳନ ନିମନ୍ତେ ସେ ସମୟର ଇତିହାସ, ସଂସ୍କୃତି, ସଭ୍ୟତା ଆଦି ସମ୍ବନ୍ଧରେ ବ୍ୟାପକ ଦୃଷ୍ଟିଭଙ୍ଗୀ ରହିଥିବ । ଏ ଦୁଇଟିକୁ ଆଖି ଆଗରେ ରଖି ପାଣ୍ଡୁଲିପି ସଂପାଦନା କରିବା ସମୟରେ ସଂପାଦକ ମୁଖ୍ୟତଃ ୩ଟି ସମସ୍ୟାର ସମ୍ମୁଖୀନ ହୁଏ । ଏହି ତିନୋଟି ସମସ୍ୟା ହେଉଛି ।

(କ) ବିଭ୍ରାନ୍ତି (*Confusion*)
(ଖ) ଲୋପ (*Omission*)
(ଗ) ବୃଦ୍ଧି (*Addittion*)

**(କ) ବିଭ୍ରାନ୍ତି :—**

ପାଣ୍ଡୁଲିପି ସଂପାଦନା ସମୟରେ ସଂପାଦକ ଅନ୍ୟୂନ ୧୬ ପ୍ରକାର ବିଭ୍ରାନ୍ତି (*Confusion*)ର ସମ୍ମୁଖୀନ ହୁଏ । ଏହି ୧୬ ପ୍ରକାର ବିଭ୍ରାନ୍ତିକୁ ଲକ୍ଷ୍ୟରଖି ସଂପାଦନା କାର୍ଯ୍ୟରେ ଅଗ୍ରସର ହେଲେ ତାହା ଶୁଦ୍ଧ ସଂପାଦନା କର୍ମକୁ ବିଶେଷ ଭାବରେ ସାହାଯ୍ୟ କରେ । ଏହି ୧୬ ପ୍ରକାର ବିଭ୍ରାନ୍ତି ହେଉଛି :—

୧) ମାତ୍ରା ସମ୍ବନ୍ଧୀୟ ବିଭ୍ରାନ୍ତି

ପ୍ରାଚୀନ ପୋଥିରେ ଲେଖିବା ସୁବିଧା ଦୃଷ୍ଟିରୁ ବ( ୍ବ ) ଓ ଯ( ୍ୟ ) ଫଳା, ଆ( ା ) 'ଈ' ( ୀ ) କାରର ପ୍ରାୟ ସମାନ ପ୍ରୟୋଗ ହୋଇଥିବାର ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ 'ଧନ୍ୟା, ଶବ୍ଦକୁ ପୋଥିରେ 'ଧନ୍ବା', 'ଖ୍ୟପଣ' 'ଖ୍ବପଣ' ଏପରି ଭାବରେ ଲେଖା ହୋଇଥିବାରୁ ଅନୁଲିପିକାର ଶବ୍ଦ ଦୁଇଟିକୁ 'ଧନ୍ବା' ଓ ଖ୍ବପଣ ରୂପରେ ଗ୍ରହଣ କରିବା ଫଳରେ ସମସ୍ୟା ସୃଷ୍ଟି ହୁଏ ।

୨) ସମାନ ଅକ୍ଷର ସମ୍ବନ୍ଧୀୟ ବିଭ୍ରାନ୍ତି

ପୋଥିରେ ଅ, ଟ, ଙ, ଉ, ଭ, ପ, ମ, କ, ନ, ରା, ଙ୍ଗ, ଗ, ଆଦି ଅକ୍ଷର ପରସ୍ପର ସହିତ ସାମ୍ୟ ରକ୍ଷା କରୁଥିବାରୁ ଅନୁଲିପିକାର ଏହି ସବୁ ଅକ୍ଷରକୁ ଅନୁଲିପି ପ୍ରସ୍ତୁତ ବେଳେ ଭୁଲ ଭାବରେ ନକଲ କରିଥାଏ । ଉଦାହରଣ ସ୍ୱରୂପ :—

ଉକତ = ଭକତ, ଆପେ = ଆସେ ଆଦିରେ ଏପରି ବିଭ୍ରାନ୍ତି ଦେଖାଯାଏ ।

୩) ସମରୂପତା ଦୃଷ୍ଟିରୁ ବିଭ୍ରାନ୍ତି

ଅନୁଲିପିକାର ଅନୁଲିପି ପ୍ରସ୍ତୁତ ସମୟରେ କେତେକ ସମରୂପୀ ଶବ୍ଦର ପ୍ରମାଦପୂର୍ଣ୍ଣ ପାଠ ଗ୍ରହଣ କରିଥାଏ । ଏହା ଫଳରେ ଅର୍ଥଗତ ବୈଷମ୍ୟ ସୃଷ୍ଟି ହେବା ସଙ୍ଗେ ସଙ୍ଗେ କବିର ମୂଳ ଭାବଧାରାଠାରୁ ଏହା ଦୂରେଇ ଯାଏ । ଉଦାହରଣ ସ୍ୱରୂପ:—

କେଶ = ବେଶ, କାଶ = ହାସ

୪) ଶବ୍ଦଗୁଡ଼ିକର ସଂକ୍ଷିପ୍ତୀକରଣରେ ମିଥ୍ୟାର୍ଥ ବିଭ୍ରାନ୍ତି

ସମସ୍ତ ସମୟରେ ଅନୁଲିପିକାର କେତେଗୁଡ଼ିଏ ଶବ୍ଦକୁ ସଂକ୍ଷିପ୍ତ କରି ପ୍ରୟୋଗ କରିବା ଦ୍ୱାରା ତାହା ଉପଯୁକ୍ତ ଅର୍ଥ ପ୍ରକାଶ ନକରି ମିଥ୍ୟାର୍ଥ ପ୍ରଦାନ କରିବା ଦ୍ୱାରା ବିଭ୍ରାନ୍ତି ସୃଷ୍ଟି କରିଥାଏ । ଯଥା:—

ପୁ. ରୁଷୋତ୍ତମ = ପୁରତ୍ତୋମ ବା ପୁରୋତ୍ତମ
ହଅନ୍ତେ = ହନ୍ତେ

୫) ଅଶୁଦ୍ଧ ସମାସ ପ୍ରୟୋଗ

ଅନୁଲିପିକାର ସମାସଯୁକ୍ତ ଶବ୍ଦକୁ ନକଲ କରିବା ସମୟରେ କେତେକ ପ୍ରମାଦ ସୃଷ୍ଟି କରିଥାନ୍ତି । ଏହି ସମାସଗୁଡ଼ିକ କୌଣସି ବ୍ୟାକରଣ ନିୟମ ରକ୍ଷା କରେ ନାହିଁ । ଓଡ଼ିଆ ପୋଥିରେ ଏହି ବିଭ୍ରାନ୍ତି ସ୍ୱଳ୍ପ ପରିମାଣରେ ଦେଖାଯିବା ସମୟରେ ସଂସ୍କୃତ ପୋଥିରେ ଏହା ବହୁଳ ଭାବରେ ପରିଦୃଷ୍ଟ ହୁଏ । ଯଥା:—

ଗତ୍ୟନ୍ତର = ଗତାନ୍ତର

୬) ଅଶୁଦ୍ଧ ଖଣ୍ଡରେ ଲିଖନ ଓ ଶବ୍ଦର ଅନ୍ତ୍ୟାକ୍ଷରକୁ ଅନ୍ୟଶବ୍ଦ ସହିତ ମିଶ୍ରୀକରଣ ବିଭ୍ରାନ୍ତି

ଅନୁଲିପିକାର ଅଶୁଦ୍ଧ ଖଣ୍ଡରେ ଲେଖିବା ଦ୍ୱାରା ଓ ଶବ୍ଦର ଅନ୍ତ୍ୟାକ୍ଷରକୁ ଅନ୍ୟଶବ୍ଦ ସହିତ ମିଶେଇ ଲେଖିବା ଦ୍ୱାରା ଏହି ସମସ୍ୟା ସୃଷ୍ଟି ହୁଏ । ଯଥା:—

ଅନୁକ୍ରମ = ଅନୁକର୍ମ

୭) ବର୍ଣ୍ଣ, ଶବ୍ଦ ଓ ବାକ୍ୟର କ୍ରମ ପରିବର୍ତ୍ତନ

କେତେକ କ୍ଷେତ୍ରରେ ଅନୁଲିପିକାର ବର୍ଣ୍ଣ, ଶବ୍ଦ ଓ ବାକ୍ୟର କ୍ରମ ପରିବର୍ତ୍ତନ କରି ସମସ୍ୟା ସୃଷ୍ଟି କରେ । ବାକ୍ୟର କ୍ରମ ପରିବର୍ତ୍ତନ ବେଳେ ପ୍ରଥମେ ୨ୟ ଧାଡ଼ିକୁ ବା ତଳ ଧାଡ଼ିକୁ ଲେଖି ତା'ପରେ ୧ମ ଧାଡ଼ିକୁ ଲେଖିବା ଦ୍ୱାରା ଏହି ପ୍ରମାଦ ସୃଷ୍ଟି ହୁଏ । ଯଥା:—

ବର୍ଣ୍ଣ ପରିବର୍ତ୍ତନ—କପଟ = କଟପ, ବନିମୟ = ବନିଯମ

ଶବ୍ଦ ପରିବର୍ତ୍ତନ—ସେ ଧନ ଦେଇ ନୃପତି ତୋତେ ବନଏ

= ସେ ଧନ ନୃପତି ଦେଇ ତୋତେ ବନଏ

ବାକ୍ୟର କ୍ରମ ପରିବର୍ତ୍ତନ—ବନୟୁ ଦେଖି ଯେ ସାନନ୍ଦ ହୋଇ ଗ୍ରାଏ

ଆସ ଆସ ତୁ ମୋର ପ୍ରାଣ ସଖାଏ ।

ଏହାକୁ ନିମ୍ନୋକ୍ତ ପ୍ରକାରେ ପରିବର୍ତ୍ତନ କରାଯାଇଛି ।

ଆସ ଆସ ତୁ ମୋର ପ୍ରାଣ ସଖାଏ

ବନୟୁ ଦେଖି ଯେ ସାନନ୍ଦ ହୋଏ ଗ୍ରାଏ ।

୮) ତତ୍ସମ ଶବ୍ଦକୁ ବିକୃତ ଭାବରେ ପ୍ରୟୋଗ ଓ ସଂସ୍କୃତ ଗ୍ରନ୍ଥରେ ଦେଶଜ ଶବ୍ଦ ପ୍ରୟୋଗ

ଅନୁଲିପିକାର ଅନୁଲିପି ପ୍ରସ୍ତୁତ ସମୟରେ ତତ୍ସମ ଶବ୍ଦକୁ ବିକୃତ ଭାବରେ ପ୍ରୟୋଗ କରି ବିଭ୍ରାନ୍ତି ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସଂସ୍କୃତ ଗ୍ରନ୍ଥରେ କେତେକ ଦେଶଜ ତଥା ଆଞ୍ଚଳିକ ଶବ୍ଦର ପ୍ରୟୋଗ କରିଥାନ୍ତି । ଯଥା:—

ଦ୍ୱୟେ = ଦୁହେଁ, ବୈଦ୍ୟ = ବେଜ, ବୃଦ୍ଧ = ଭୂଅ, ମୂର୍ତ୍ତି = ମୂର୍ଲି

୯) ଅଙ୍କ ପ୍ରୟୋଗରେ ବିଭ୍ରାନ୍ତି

ଅନୁଲିପିକାର ପୋଥିର ପୃଷ୍ଠାରେ କେତେକ ବିଭ୍ରାନ୍ତିକର ଅଙ୍କ ବା ସଂଖ୍ୟା ପ୍ରୟୋଗ କରିଥାଏ । ଏପରିକି ପଦ ଶେଷରେ ମଧ୍ୟ ଅଙ୍କ ପ୍ରୟୋଗ କରିବାରେ ସମସ୍ୟା ସୃଷ୍ଟି କରିଥାଏ । କେବଳ ସେତିକି ନୁହେଁ ରଜାଙ୍କର ରାଜତ୍ୱବର୍ଷ, ପତ୍ନୀ ସଂଖ୍ୟା ଆଦିରେ ପ୍ରଯୁକ୍ତ ଅଙ୍କ ବା ସଂଖ୍ୟାକୁ ଭ୍ରମପୂର୍ଣ୍ଣ ଭାବେ ପ୍ରଦାନ କରିଥାଏ । ଯଥା: —

ଦୁଇ ସତ୍ପାଞ୍ଚ = ଦୁଇ ଶତପାଞ୍ଚ ।

୧୦) ନାମବାଚକ ଶବ୍ଦ (*Propernames*) ଉଚ୍ଚାରଣରେ ବିଭ୍ରାନ୍ତି

ଅନୁଲିପିକାର ସମୟ ସମୟରେ ନାମବାଚକ ଶବ୍ଦକୁ ପ୍ରମାଦପୂର୍ଣ୍ଣ ଭାବେ ଲେଖିଥାଏ । ଯଥା:—

ଅଙ୍ଗିର = ଅଗ୍ନି; ଜ୍ୟୋତ୍ସ୍ନା = ଦ୍ୱୋହନା, ଭରଦ୍ୱାଜ = ଘରଦ୍ୱାଦସ,
ଋଷିଶୃଙ୍ଗ = ଋଷିସିଂଘ

୧୧) ଅପରିଚିତ ଶବ୍ଦକୁ ସୁପରିଚିତ ଶବ୍ଦରେ ପରିଣତ କରିବା

ସମୟ ସମୟରେ ଅନୁଲିପିକାର କୌଣସି ଗୋଟିଏ ଅପରିଚିତ ଶବ୍ଦକୁ ଏକ ସୁପରିଚିତ ଶବ୍ଦରେ ପରିଣତ କରି ପ୍ରୟୋଗ କରିବାଦ୍ୱାରା ଏଭଳି ସମସ୍ୟା ସୃଷ୍ଟି ହୁଏ । ଯଥା:—

ଯକ୍ଷ = ଦକ୍ଷ, ଯକ୍ଷିଣୀ = ଦ୍ରାକ୍ଷିଣୀ, ପକ୍ଷି = ପାଖି

୧୨) ପ୍ରାଚୀନ ଶବ୍ଦର ଅର୍ଥ ନବୁଝି ତା ବଦଳରେ ନୂତନ ଶବ୍ଦ ପ୍ରୟୋଗ

ଅନୁଲିପିକାର ତାର ଜ୍ଞାତସାରରେ ପୋଥିରେ ଥିବା ପ୍ରାଚୀନ ଶବ୍ଦର ଅର୍ଥ ବୁଝି ନପାରିଲେ ଅନୁଲିପି ପ୍ରସ୍ତୁତ ବେଳେ ସେହି ଶବ୍ଦ ବଦଳରେ ଏକ ନୂତନ ଶବ୍ଦ ପ୍ରୟୋଗ କରି ବିଭ୍ରାନ୍ତି ସୃଷ୍ଟି କରେ । ଯଥା —

ମୁଗଲ କୁଚ ଶଚୟ = ମୁଗଲ କୋଚ ଶଚୟ, ମୁଗଲ କୂର ଶଚୟ

୧୩) ଅଜ୍ଞାନତା ବଶତଃ ଭୁଲକୁ ସୁଧାରିବାକୁ ଯାଇ ଭ୍ରମପୂର୍ଣ୍ଣ ଶବ୍ଦ ପ୍ରୟୋଗ ବିଭ୍ରାନ୍ତି

ଅନୁଲିପିକାର ନିଜର ଅଜ୍ଞାନତା ବଶତଃ ଗୋଟିଏ ଭୁଲକୁ ସୁଧାରିବା ନିମନ୍ତେ ଯାଇ ଅନୁଲିପିରେ ଏକ ଭ୍ରମ ପୂର୍ଣ୍ଣ ଶବ୍ଦ ପ୍ରୟୋଗ କରିଦିଏ । ଯଥା :-

ମୁହିଁ ସେ ସମସ୍ତଙ୍କୁ ହିଁ ବନ୍ଧ ବିଧାତା (୧)
= ମୁହିଁ ସେ ସମସ୍ତଙ୍କର ବିହନ୍ତା ବିଧାତା

---

୧) ଚଣ୍ଡୀପୁରାଣ—ସଂପା. ଡ଼ଃ. କୃଷ୍ଣ ଚରଣ ସାହୁ (୧୯୪୯) ପଦ ୧୬୦, ପୃ. ୧୨

୧୪) ଶ୍ରବଣ ଜନିତ ବିଭ୍ରାନ୍ତି

ଅନୁଲିପିକାରର ଶ୍ରବଣ ଶକ୍ତି ଜନିତ ଦୋଷ ଥିଲେ ଓ ଅନୁଲିପି ପ୍ରସ୍ତୁତି ସମୟରେ ଜଣେ ଡ଼ାକୁଥିଲେ ଏ ପ୍ରକାର ବିଭ୍ରାନ୍ତି ସୃଷ୍ଟି ହୁଏ । ସାଧାରଣତଃ ଅନୁଲିପିକାର ନିଜେ ପୋଥି ଦେଖି ଦେଖି ଲେଖୁଥିବାରୁ ଏଭଳି ପ୍ରମାଦର ସମ୍ଭାବନା ଯଥେଷ୍ଟ କମ୍ ।

୧୫) ଉଚ୍ଚାରଣ ଜନିତ ବିଭ୍ରାନ୍ତି

ଅନୁଲିପିକାର ନିଜେ ଯେଉଁ ଭଳି ଉଚ୍ଚାରଣ କରେ ଠିକ୍ ସେହି ଭଳି ଲେଖିବା ପାଇଁ ଉଦ୍ୟମ କରୁଥିବାରୁ ଅନୁଲିପିରେ ଏପରି ସମସ୍ୟା ଦେଖାଯାଏ । ଯଥା :—

ଜ୍ୟୋତ୍ସ୍ନା = ଜ୍ୟୋଛନା, ଦର୍ପଣ = ଦ୍ରପ୍ଣ, ଶ୍ରମ = ଶର୍ମ
ବ୍ୟାଧି = ବ୍ୟାର୍ଧି, ପ୍ରଥମ = ପର୍ଥମ

୧୬) ଦୃଷ୍ଟି ଦୋଷ ଜନିତ ବିଭ୍ରାନ୍ତି

ଅନୁଲିପିକାରର ଯଦି ଦୃଷ୍ଟି ଶକ୍ତି କମ୍ ଥାଏ କିମ୍ବା ପୋଥିର ଅର୍ଥରେ ଷ୍ଟ୍ରେଠ ଥାଏ ତେବେ ସେ ଦେଖି ଦେଖି ଅନୁଲିପି ପ୍ରସ୍ତୁତ କରିବା ସମୟରେ କେତେକ ଶବ୍ଦକୁ ସ୍ପଷ୍ଟ ରୂପେ ଦେଖି ନପାରି ଏଭଳି ଭୁଲ କରିବସେ । ଯଥା :-

ଆସନ୍ନ = ହସନ୍ତି, କାସନ୍ନ = ହସନ୍ତି

## ଖ) ଲୋପ :—

ଏତଦ୍‌ବ୍ୟତୀତ ପାଣ୍ଡୁଲିପି ସଂପାଦନା ସମୟରେ କେତେଗୁଡ଼ିଏ 'ଲୋପ' ସଂପାଦନାରେ ସମସ୍ୟା ସୃଷ୍ଟି କରେ । ଏହି ଲୋପକୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ କରାଯାଏ ।

୧) ଅକ୍ଷର ଲୋପ ୨) ଶବ୍ଦ ଲୋପ ୩) ପଦ ଲୋପ ୪) ମାତ୍ରା ଲୋପ

୧) ଅକ୍ଷର ଲୋପ :—

ପୋଥିର ଲିଖନକାର ପୋଥିର ଅନୁଲିପି ପ୍ରସ୍ତୁତ କରିବା ସମୟରେ ନିଜର ଇଚ୍ଛାକୃତ ଭାବେ ବା ଅନିଚ୍ଛାକୃତ ଭାବେ

ଅନୁଲିପି ମଧ୍ୟରେ ଶବ୍ଦର ଅକ୍ଷର ଲୋପ କରିଥାଏ । ଏହି ଅକ୍ଷର ଲୋପ ୩ ପ୍ରକାର ହୋଇପାରେ । ଯଥା :- ଆଦ୍ୟ ଅକ୍ଷର ଲୋପ (*Homoeoareta*), ଅନ୍ତ୍ୟାକ୍ଷର ଲୋପ (*Homocolnta*) ଓ ସମାକ୍ଷର ଲୋପ (*Haplography*). । ଏହି ପ୍ରକାର ଲୋପ ଅନୁଲିପିକାରର ଶିଘ୍ର ଲେଖିବା ପାଇଁ ଆଗ୍ରହ ହେତୁ ମଧ୍ୟ ହୋଇପାରେ ।

୨) ଶବ୍ଦ ଲୋପ :—

ଅନୁଲିପିକାର ସମୟ ସମୟରେ ଅନୁଲିପି ପ୍ରସ୍ତୁତ କରିବା ସମୟରେ ନିଜର ଇଚ୍ଛାକୃତ ବା ଅନିଚ୍ଛାକୃତ ଭାବେ କେତେକ ଶବ୍ଦକୁ ଅନୁଲିପିରୁ ଲୋପ କରି ଦେଇଥାଆନ୍ତି । ଏହା ସାଧାରଣତଃ ପଦ ମଧ୍ୟରେ ସଂଘଟିତ ହୋଇଥାଏ ।

୩) ପଦ ଲୋପ :—

ଅନୁଲିପି ପ୍ରସ୍ତୁତ ସମୟରେ ଅନୁଲିପିକାର ନିଜର ଅଜାଣତରେ କେତେକ ପଦକୁ ଲୋପ କରି ଦେଇଥାନ୍ତି । ତାହାର କାରଣ ହେଉଛି ଅନୁଲିପି ପ୍ରସ୍ତୁତ ସମୟରେ ଅନୁଲିପିକାରର ଅନ୍ୟମନସ୍କତା । ଉଦାହରଣ ସ୍ୱରୂପ ଗୋଟିଏ ପଦର ଶେଷରେ 'ଯୋଜନ' ଶବ୍ଦର ପ୍ରୟୋଗ ହୋଇଛି । ସେହିପୃଷ୍ଠାର ଆଉ କେତୋଟି ପଦ ପରେ ମଧ୍ୟ ପୁନର୍ବାର ସେହି 'ଯୋଜନ' ଶବ୍ଦର ପ୍ରୟୋଗ ରହିଛି । ଅନୁଲିପିକାରର ଅନ୍ୟମନସ୍କତା ହେତୁ ପ୍ରଥମ 'ଯୋଜନ' ଥିବା ପଦଟି ଲେଖି ସାରିବା ପରେ ପରବର୍ତ୍ତୀ 'ଯୋଜନ' ଥିବା ପଦର ପରବର୍ତ୍ତୀ ଅଂଶକୁ ନକଲ କରିନିଏ । ଏହା ଦ୍ୱାରା ମଝିରେ ଥିବା ଅନ୍ୟ ପଦ ଗୁଡ଼ିକ ଲୋପ ପାଇଯାଏ । ଏହି ଅନୁଲିପିର ଅନୁକରଣରେ ହୋଇଥିବା ଅନ୍ୟ ପ୍ରତିଲିପି ଗୁଡ଼ିକର ଏହି ନିର୍ଦ୍ଦିଷ୍ଟ ସ୍ଥାନର ପଦଗୁଡ଼ିକ ନଥିବାରୁ ଏହା ପାଣ୍ଡୁଲିପିର ବଂଶ ବୃକ୍ଷ ନିର୍ମାଣରେ ଯଥେଷ୍ଟ ସହାୟକ ହୁଏ ।

୪) ମାତ୍ରାଲୋପ :—

ପୋଥିର ନକଲ କରିବା ସମୟରେ ନକଲକାର ନିଜର ଅଜ୍ଞତା ବଶତଃ ବା ଦ୍ରୁତଲିଖନ ସମୟରେ କେତେ ଗୁଡ଼ିଏ ମାତ୍ରାକୁ ବାଦ

ହେଉଥାଏ । ଏହାଦ୍ୱାରା ଗୋଟିଏ କଣ୍ଟୁ ଅର୍ଥ ବାହାରିଲେ ମଧ୍ୟ ଗ୍ରନ୍ଥକାରଙ୍କ ମୂଳଭାବ ଧାରା ଅସ୍ପଷ୍ଟ ହୋଇଯାଏ । ଯଥା :—

ପ୍ରତିଶ୍ରୁତି = ପତିସଙ୍ଗି, ପ୍ରତିମାନ = ପ୍ରତିମନ, ଛାଡ଼ିଥିଲ = ଛାଡ଼ିଥିଲା

**ବୃଦ୍ଧି :—**

ପାଣ୍ଡୁଲିପି ସଂପାଦନା ସମୟରେ କେତେ ଗୁଡ଼ିଏ ବୃଦ୍ଧି ସଂପାଦନା କାର୍ଯ୍ୟରେ ଅନ୍ତରାୟ ସୃଷ୍ଟି କରେ । ତେଣୁ ସଂପାଦକ ନିମ୍ନୋକ୍ତ ୯ ଗୋଟି ବୃଦ୍ଧି ପ୍ରତି ଯଥେଷ୍ଟ ଲକ୍ଷ୍ୟ ରଖିବା ଆବଶ୍ୟକ ।

୧) ବିଷୟ ବା ଦ୍ରବ୍ୟ ତାଲିକାର ବୃଦ୍ଧି :—

ସମୟ ସମୟରେ ଅନୁଲିପିକାର ଗ୍ରନ୍ଥ ମଧ୍ୟରେ ଥିବା ବିଷୟ, ଦ୍ରବ୍ୟ, ରାଜା ମାନଙ୍କର ଆଗମନ, ପରିଭ୍ରମଣ ଆଦି ପ୍ରସଙ୍ଗ ସମୟରେ ଦିଆଯାଇଥିବା ତାଲିକାରେ ସଂଖ୍ୟାର ବୃଦ୍ଧି କରିଥାନ୍ତି । ଏପରିକି ଯୁଦ୍ଧ ସମୟରେ ସୈନ୍ୟ, ଅଶ୍ୱ, ହସ୍ତୀ ଓ ଯୁଦ୍ଧ ସାମଗ୍ରୀ ବର୍ଣ୍ଣନା ବେଳେ କିମ୍ବା ଯୁଦ୍ଧର ଘନଘଟା ବର୍ଣ୍ଣନା ବେଳେ ମଧ୍ୟ କେତେ ସଂଖ୍ୟା ବୃଦ୍ଧି ହୋଇଥାଏ । ଏତଦ୍ ବ୍ୟତୀତ ରାଗ, ତାଳ, ବୃତ୍ତ ଆଦିର ସଂଖ୍ୟା ମଧ୍ୟ ବୃଦ୍ଧି କରାଇଥାଏ ।

୨) ପୂର୍ବାନୁଭବ ବା ପୁନରାବୃତ୍ତି ଦ୍ୱାରା ବୃଦ୍ଧି :—

ଅନୁଲିପିକାର ଅନୁଲିପି ପ୍ରସ୍ତୁତ ସମୟରେ ନିଜର ପୂର୍ବାନୁଭବ ବା ପୁନରାବୃତ୍ତି ଦ୍ୱାରା ଅନୁଲିପିରେ କେତେକ ପାଠ ଯୋଗ କରିଥାଏ । ଏହି ପ୍ରକାର ବୃଦ୍ଧି ସାଧାରଣତଃ ଗଳ୍ପର ପୁନରାବୃତ୍ତି, ଉଦ୍ଦେଶ୍ୟ ଓ ଅଭିପ୍ରାୟ-ମୂଳକ ଘଟଣା ବର୍ଣ୍ଣନା ସମୟରେ, କିମ୍ବା କଥୋପକଥନ ସମୟରେ କରାଯାଇଥାଏ । ସମୟ ସମୟରେ ଶୋକ ଓ ବ୍ୟଙ୍ଗ ମୂର୍ତ୍ତି ଘଟଣା ବର୍ଣ୍ଣନା ପ୍ରସଙ୍ଗରେ, କିମ୍ବା କୁମାରୀମାନଙ୍କର ଆମୋଦାତ୍ମକ ଅନୁଭୂତି ସମୟରେ, ରାଜ ପରିବାରର ଭବିଷ୍ୟତ ପ୍ରସଙ୍ଗରେ ମଧ୍ୟ ଅନୁଲିପିକାର କେତେକ ବୃଦ୍ଧି କରିଥାଆନ୍ତି । ଯଦି ଅନୁଲିପି ପ୍ରସ୍ତୁତ ସମୟରେ ଅନୁଲିପିକାର ଅନ୍ୟ ମନସ୍କ ରହି ନକଲ କରେ ତେବେ ସେ କେତେଗୁଡ଼ିଏ ପଦକୁ ବାରମ୍ବାର

ଲେଖିଦିଏ । ଅର୍ଥାତ୍ ଗୋଟି ପଦ ଆରମ୍ଭରେ 'ବନ୍ଦେନ୍ଦ୍ରାବାହାନେ' ଥିଲେ ସେ ଏହା ପରର ୨/୪ ପଦ ଲେଖି ସାରିବା ପରେ ଅନ୍ୟ ମନସ୍କ ବଶତଃ ଏହାକୁ ପୁନର୍ବାର ଲେଖି ଦିଏ । ଫଳରେ ପାଣ୍ଡୁଲିପିରେ ପାଠ ବୃଦ୍ଧି ଘଟିଥାଏ ।

୩) ଧର୍ମାନୁଷ୍ଠାନ ଓ କର୍ମକର୍ମାଣି ସମୟରେ :—

ଅନୁଲିପିକାର ଧର୍ମାନୁଷ୍ଠାନ ଓ କର୍ମକର୍ମାଣି ସମୟରେ ତାଙ୍କ ଅଞ୍ଚଳରେ ପ୍ରଚଳିତ କେତେକ ବିଧିବିଧାନର ପ୍ରୟୋଗ କରି ଅଧିକ ପାଠ ପ୍ରଦାନ କରିଥାନ୍ତି । ଏହି ସ୍ଥଳରେ ଗ୍ରନ୍ଥକାର ଛାଡ଼ି ଯାଇଥିବା ଅନୁମାନ କରି ଅନୁଲିପିକାର ଏତାଦୃଶ ବିଷୟରେ ଅଧିକ ସଂଯୋଗ କରିଥାନ୍ତି ।

୪) ବର୍ଣ୍ଣନା ସମୟରେ :—

କୌଣସି ରାଜପୁରର ବର୍ଣ୍ଣନା, ନାୟକ ନାୟିକାଙ୍କ ରୂପବର୍ଣ୍ଣନା, ସୌନ୍ଦର୍ଯ୍ୟ ବର୍ଣ୍ଣନା ଆଦି ସମୟରେ ଅନୁଲିପିକାର କେତେକ ନୂତନପଦ ସଂଯୋଗ କରନ୍ତି । ଏ ପ୍ରକାର ନୂତନ ସଂଯୋଗର ଉଦ୍ଦେଶ୍ୟ ହେଉଛି ବିଶଦ ବର୍ଣ୍ଣନା । ଏହିଭଳି ସଂଯୋଗ ବକ୍ତୃତା ବା କଥୋପକଥନ ସମୟରେ ମଧ୍ୟ ହୋଇଥାଏ । ଜଗମୋହନ ରାମାୟଣରେ ତିନି ରାଣୀଙ୍କ କଥା ଅଛି ଅଥଚ ବିବାହର ଦୃଶ୍ୟ ନାହିଁ । ସେଥିପାଇଁ ଦକ୍ଷିଣୀ ରାମାୟଣରେ ତିନି ରାଣୀଙ୍କ ବିବାହ ସହିତ ଅନ୍ୟ ବହୁରାଣୀଙ୍କ ବିବାହ ବର୍ଣ୍ଣନା ପ୍ରଦାନ କରାଯାଇଛି ।

୫) ଅନ୍ୟଗ୍ରନ୍ଥରୁ ପାଠ ଆଣି ମୌଳିକ ପାଠରେ ଯୋଗ କରିବା :—

ସମୟ ସମୟରେ ଅନ୍ୟଗ୍ରନ୍ଥରୁ କେତେକ ପାଠ ବା ବିଷୟ ନିର୍ଯ୍ୟାସକୁ ଆଣି ମୌଳିକ ପାଠରେ ସଂଯୋଗ କରାଇଥାଏ । ଏହାଦ୍ୱାରା କେତେକ ଅବାନ୍ତର ବିଷୟର ପ୍ରବେଶ ହେତୁ ମୂଳପାଠ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସମ୍ପାଦକ ପାଇଁ ସମସ୍ୟା ସୃଷ୍ଟି କରେ । ଉଦାହରଣ ସ୍ୱରୂପ ଭାଗବତରେ ସଂସ୍କୃତ ଶ୍ଳୋକର ସମାବେଶ, ପଦ୍ୟରେ ଲେଖାଯାଇଥିବା ସମ୍ବାଦ କିମ୍ବା

ଆଙ୍କାପଦକୁଗଦ୍ୟ ରୂପପ୍ରଦାନକରିବା,ଗଦ୍ୟକୁ ପଦ୍ୟରୂପଦେବା,ନବାକ୍ଷରୀବୃତ୍ତିର ରଚିତ ଗ୍ରନ୍ଥ ହୋଇଥିଲେ ତନ୍ମଧ୍ୟରେ ଭାଗବତର ପଦ ସବୁର ସମନ୍ୱୟ କରିବା ଆଦି । ତେଣୁ ସଂପାଦକ ସଂପାଦନାସମୟରେ ଏସବୁ ପ୍ରକ୍ଷେପ ପାଇଁ ବିଶେଷ ଦୃଷ୍ଟି ଦେବା ଆବଶ୍ୟକ ।

୬) ନୀତିକଥା ଓ ସାରଗର୍ଭକ ବିବରଣୀ ସମୟରେ

କୌଣସି ସ୍ଥଳରେ ଯଦି ନୀତିକଥା ବା ସାରଗର୍ଭକ ବିବରଣୀ ପ୍ରଦାନ କରାଯାଇଥାଏ, ସେ ସ୍ଥାନରେ ଅନୁଲିପିକାର ସମ୍ପୂର୍ଣ୍ଣଭାବରେ ବା ଆଂଶିକ ଭାବରେ କେତେଗୁଡ଼ିଏ ଅଧିକ ସାରଗର୍ଭକ ତଥା ଶିକ୍ଷାପ୍ରଦ ପଦର ସଂଯୋଗ କରିଥାଏ । ପାଠକକୁ ତଥା ସମାଜକୁ ଅଧିକ ସଚେତନ କରିବା ଉଦ୍ଦେଶ୍ୟରେ ସେ ଏଭଳି ସଂଯୋଗ କରିଥାଏ । ଜଗମୋହନ ରାମାୟଣର ଆରଣ୍ୟକ କାଣ୍ଡରେ ରାମଚନ୍ଦ୍ରଙ୍କୁ ଚକ୍ରବାକର ଉପଦେଶ ମଧ୍ୟରେ ଏଭଳି ସଂଯୋଗ ପରିଦୃଷ୍ଟ ହୁଏ ।

୭) ବିଭିନ୍ନ ଅଞ୍ଚଳର ଲୋକକଥା ସଂଯୋଗ

ଅନୁଲିପିକାର ପ୍ରସଙ୍ଗକ୍ରମରେ ନିଜ ଅଞ୍ଚଳର ବା ଅନ୍ୟ କୌଣସି ଅଞ୍ଚଳରେ ପ୍ରଚଳିତ ଲୋକକଥାକୁ ସଂଯୋଗ କରି ପାଠରେ ବୃଦ୍ଧି କରାଇଥାଏ । ଏହା ଦ୍ୱାରା ଅନୁଲିପିକାରର ଆଞ୍ଚଳିକ ମନୋବୃତ୍ତି ସହିତ ଲୋକ ସଂସ୍କୃତିର ପରିଚୟ ମିଳେ । ଉଦାହରଣ ସ୍ୱରୂପ ହନୁମାନର ସୀତାଙ୍କୁ ଅଙ୍ଗୁରୀୟ ପ୍ରଦାନ ଷଡ଼େଇକଳାରୁ ସଂଗୃହୀତ ପୋଥିରେ ଓ କରିବାହୁ ଉପାଖ୍ୟାନ ବଙ୍ଗଳାରୁ ସଂଗୃହୀତ ପୋଥିରେ ଦେଖିବାକୁ ମିଳୁଥିବା ବେଳେ ଓଡ଼ିଶାରୁ ସଂଗୃହୀତ ପୋଥିରେ ଏହାର ସୂଚନା ମାତ୍ର ନାହିଁ ।

୮) ଗୋଟିଏ ପ୍ରକାର ପଦର ଦ୍ୱିରୁକ୍ତି

ସମୟ ସମୟରେ ଅନୁଲିପିକାରର ଅସାବଧାନତା ହେତୁ ଗୋଟିଏ ପ୍ରକାର ପଦ ଦ୍ୱିରୁକ୍ତି ଘଟି ପାଠ ବୃଦ୍ଧି ହୋଇଥାଏ । ଯଥା :—

ବଳେ = ବଳେ ବଳେ, ଘନ = ଘନ ଘନ,
ଉଠ = ଉଠ ଉଠ ।

୯) ଛନ୍ଦ, ରାଗ ଓ ତାଳ ପ୍ରୟୋଗ ଦ୍ୱାରା

କୌଣସି ପାଠ ନିର୍ଦ୍ଦିଷ୍ଟ ଛନ୍ଦରେ ରଚିତ ହୋଇଥିଲେ ମଧ୍ୟ ତାର ଗାନ ପଦ୍ଧତି ଦ୍ୱାରା ପ୍ରଭାବିତ ହୋଇ ଅନୁଲିପିକାର କେତେକ ପରିବର୍ତ୍ତନ କରିଥାଏ । ଏହା ଦ୍ୱାରା କେତେକ ପଦରେ ଶବ୍ଦ ସଂଯୋଜନା କରିବା ବେଳେ କେତେକ ପଦରୁ ଶବ୍ଦ ଲୋପ କରିବାକୁ ବାଧ୍ୟ ହୁଏ । ଉଦାହରଣ ସ୍ୱରୂପ ଦାଣ୍ଡିବୃତ୍ତକୁ ଆବୃତ୍ତି କରିବା ସମୟରେ ଏଥିରେ ଅଧିକ ଶବ୍ଦ ସଂଯୋଗ କରିବାର ବହୁ ସୁଯୋଗ ଥାଏ । ସେଥିପାଇଁ ଅନୁଲିପିକାର ଅନେକ ସମୟରେ ଅନୁଲିପି ପ୍ରସ୍ତୁତି ବେଳେ ପୁଣି, ହାଦେ, ଯେ, ସେ ପ୍ରଭୃତି ଶବ୍ଦକୁ ବ୍ୟବହାର କରିଥାନ୍ତି । ତେଣୁ ସଂପାଦନା ସମୟରେ ସଂପାଦକ ଏ ବିଷୟ ପ୍ରତି ସଚେତନ ରହିବା ବିଧେୟ ।

ଉପରୋକ୍ତ ସମସ୍ତ ବିଷୟ ପ୍ରତି ଦୃଷ୍ଟି ନିକ୍ଷେପ କରି ସଂପାଦକ କାର୍ଯ୍ୟରେ ଅଗ୍ରସର ହେବା ଆବଶ୍ୟକ । ଏ ସମସ୍ତ ସତର୍କତା ସତ୍ତ୍ୱେ ସମୟ ସମୟରେ ତାଳପତ୍ର ପୋଥିରେ ଲେଖକକାର ମନଇଚ୍ଛା ଲେଖିବା ଦ୍ୱାରା, ଅପେକ୍ଷାକୃତ ସହଜ ପଦ୍ଧତିଦ୍ୱାରା, ଭୁଲ୍ କାଟିବା ସମୟରେ ଓ ଛୁଟି ଯାଇଥିବା ଅଂଶ ସଂଯୋଗ ବେଳେ କେତେକ ସମସ୍ୟା ସୃଷ୍ଟି କରିଥାନ୍ତି । ବିଶେଷକରି ଭୁଲ କାଟିବା ସମୟରେ ଅକ୍ଷର ମଝିରେ ଓ କେତେକ ସ୍ଥଳରେ ନିମ୍ନରେ ବା ଅକ୍ଷରଉପରେ ବିନ୍ଦୁ ଦେଇ କାଟିଥିବାରୁ ଅନୁଲିପିକାର ସେଅକ୍ଷରକୁ ଅନୁଲିପି ପ୍ରସ୍ତୁତି ବେଳେ ସମୟ ସମୟରେ ଗ୍ରହଣ କରିନିଏ । ଏହା ତାର ଅଜ୍ଞତା ବଶତଃ ହୋଇପାରେ । କେବଳ ସେତିକି ନୁହେଁ ପୋଥି ଲେଖିଲା ବେଳେ ଅକ୍ଷରକୁ ଅକ୍ଷର ଲଗି ଲଗି ଲେଖା ହୋଇଥିବାରୁ ଓ ଧାଡ଼ିଗୁଡ଼ିକ ପାଖକୁ ପାଖ ଲାଗିଥିବାରୁ କୌଣସି ଅଂଶ ଛୁଟି ଯାଇଥିଲେ ଅନୁଲିପିକାର ତାକୁ ସଂଯୋଗ କରିବା ବେଳେ ସମସ୍ୟା ସୃଷ୍ଟି କରେ । କାରଣ ସେ ସେହି ଅଂଶକୁ ଧାଡ଼ି ମଝିରେ କେତେବେଳେ ଗୁଞ୍ଜି ମୁଞ୍ଜି ଅତ୍ୟନ୍ତ ଶ୍ରେଷ୍ଠ ଭାବରେ ଲେଖେ ତ କେତେବେଳେ ପତ୍ରର ଉପରେ ବା ନିମ୍ନଭାଗରେ ଥିବା ସ୍ଥାନରେ ଲେଖି ନିଏ । ଏହା ଦ୍ୱାରା ଅନୁଲିପିକାର ସମସ୍ୟାର ସମ୍ମୁଖୀନ ହୋଇ ଅନୁଲିପିରେ ପ୍ରମାଦ ସୃଷ୍ଟି କରିଥାଏ । ପାଣ୍ଡୁଲିପିରେ ପୂର୍ଣ୍ଣଚ୍ଛେଦ, କମା,

ସଂଯୁକ୍ତ ଚିହ୍ନ ବା ଅନ୍ୟାନ୍ୟ ବିରାମ ଚିହ୍ନ ଦିଆଯାଇ ନଥିବାରୁ ଅନୁଲିପିକାର ଅନୁଲିପି ପ୍ରସ୍ତୁତ ବେଳେ ସମସ୍ୟାରେ ପଡ଼ିଥାଏ । ସେହି ସମସ୍ୟା ଦ୍ୱାରା ଅନୁଲିପିରେ ଶବ୍ଦ ବିକୃତି ଘଟିଥାଏ ।

ତେଣୁ ପାଣ୍ଡୁଲିପି ସମ୍ପାଦକ ଉପରୋକ୍ତ ସମସ୍ତ ସମସ୍ୟା ପ୍ରତି ବିଶେଷ ସଚେତନ ରହି ସଂପାଦନା କାର୍ଯ୍ୟରେ ଅଗ୍ରସର ହେଲେ ସଂପାଦନାଟି ଶୁଦ୍ଧ ହେବାର ଯଥେଷ୍ଟ ସମ୍ଭାବନା ରହେ ।

—※—

# ପାଣ୍ଡୁଲିପି ସଂପାଦନା ବିଧିର ସୋପାନ

ପାଣ୍ଡୁଲିପି ବା ପୋଥିର ସଂପାଦନା ନିମନ୍ତେ ଆଗ୍ରହୀ ସଂପାଦକ ନିର୍ଦ୍ଦିଷ୍ଟ ମାର୍ଗରେ ଅଗ୍ରସର ହେବା ଦରକାର । ଏହି ନିର୍ଦ୍ଦିଷ୍ଟ ମାର୍ଗକୁ 'ସଂପାଦନା ବିଧିର ସୋପାନ' ରୂପେ ଗ୍ରହଣ କରାଯାଏ । ଯେପରି ଜଣେ ବ୍ୟକ୍ତି କୌଣସି ଏକ ଅଟ୍ଟାଳିକା ଉପରକୁ ଗମନ କରିବାକୁ ହେଲେ ଗୋଟିଏ ପରେ ଗୋଟିଏ ସୋପାନ ଅତିକ୍ରମ କରିବାକୁ ହୁଏ, ଠିକ୍ ସେହିପରି ପାଣ୍ଡୁଲିପି ସଂପାଦନା ମାଧ୍ୟମରେ ଅନ୍ୟୁନ ଆଠ ଗୋଟି ସୋପାନ ଅତିକ୍ରମ ପରେ ପାଠାଲୋଚନା କରାଯାଏ । ଏହି ଆଠ ଗୋଟି ସୋପାନ ହେଉଛି :—

କ) ପୋଥି ସଂଗ୍ରହ ଓ ଅନୁଲିପି ପ୍ରସ୍ତୁତି

ଖ) ତୁଳନା

ଗ) ପାଠ ପ୍ରସ୍ତୁତି

ଘ) ପାଠ ତୁଳନା

ଙ) ପାଠ ନିର୍ମାଣ ବା ସନ୍ନୀକରଣ

ଚ) ବଂଶ ବୃକ୍ଷ ନିର୍ମାଣ

ଛ) ଆଦର୍ଶ ପୋଥି ନିର୍ଦ୍ଧାରଣ

ଜ) ଶୁଦ୍ଧ ପାଠ ନିର୍ଣ୍ଣୟ

## କ) ପୋଥି ସଂଗ୍ରହ ଓ ଅନୁଲିପି ପ୍ରସ୍ତୁତି

ସଂପାଦନା କାର୍ଯ୍ୟ ନିମନ୍ତେ ଏକାଧିକ ପୋଥି ସଂଗ୍ରହ କରିବା ଦରକାର । ପୋଥିଗୁଡ଼ିକୁ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରୁ ସଂଗ୍ରହ ନ କରି ବିଭିନ୍ନ ଅଞ୍ଚଳରୁ ସଂଗ୍ରହ କରିବା ଆବଶ୍ୟକ । ଏହି ପୋଥି ସଂଗ୍ରହ ଚିଠିପତ୍ର ମାଧ୍ୟମରେ, ନିଜେ ଯାଇ ବା ଅନ୍ୟ କାହାଦ୍ୱାରା, କିମ୍ବା କୌଣସି ସଂଗ୍ରହାଳୟ ମାଧ୍ୟମରେ ସଂଗ୍ରହ କରାଯାଇପାରେ । ପୋଥି ସଂଗ୍ରହ କରିବା ପରେ ତା'ର

ସଂରକ୍ଷଣ ବିଧାନ ଦୃଷ୍ଟିରୁ ଏକ ବିବରଣାତ୍ମକ ଗ୍ରନ୍ଥସୂଚୀ (**Descriptive Catalogue**) ପ୍ରସ୍ତୁତ କରିବା ନିତାନ୍ତ ଦରକାର । ଏଥିରେ ପୋଥିର ସଂଗ୍ରହ ସ୍ଥଳର ସୂଚନା ଆଦି ରହିବା ବିଧେୟ । ଏହାପରେ ଅନୁଲିପି ପ୍ରସ୍ତୁତ କରିବା ଦରକାର । ଅନୁଲିପି ପ୍ରସ୍ତୁତ କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ତାଳପତ୍ରରୁ କାଗଜକୁ ନକଲ କରି ପଠନ ଉପଯୋଗୀ କରିବା । କେତେକ ସ୍ଥଳରେ ସମ୍ପାଦନା ନିମନ୍ତେ ଗୋଟିଏ ପୋଥିର ଅନୁଲିପି ପ୍ରସ୍ତୁତ କରି ଅନ୍ୟ ପୋଥିକୁ ତା' ସହିତ କେବଳ ମିଳାଇ ଦିଆଯାଇଥାଏ । ଅନୁଲିପି ପ୍ରସ୍ତୁତ ସମୟରେ ପୋଥିରେ ଥିବା ପ୍ରତ୍ୟେକ ଶବ୍ଦ ଓ ମାତ୍ରା ଆଦିକୁ ସଠିକ୍ ଭାବରେ ନକଲ କରିବା ଦରକାର । ଏ ସମ୍ପର୍କରେ ବିଶେଷ ଆଲୋଚନା ଅନୁଲିପି ପ୍ରସ୍ତୁତି ପ୍ରସଙ୍ଗରେ କରାଯାଇଛି ।

ଖ) **ତୁଳନା**

ଅନୁଲିପି ପ୍ରସ୍ତୁତ ପରେ ପାଠର ପରସ୍ପର ତୁଳନା ନିମନ୍ତେ ସଜାଇ ରଖିବା ଦରକାର । ଏହି ସଜ୍ଜୀକରଣ ସାଧାରଣତଃ କାଳକ୍ରମ ଅନୁସାରେ ବା ଅଞ୍ଚଳ ଅନୁସାରେ କରାଯିବା ଆବଶ୍ୟକ । ଯେଉଁ ପୋଥିରେ ପୁଷ୍ପିକା ଥିବ ସେଗୁଡ଼ିକ କାଳକ୍ରମ ଅନୁସାରେ ସଜାଇନେବା ସୁବିଧା ଜନକ । ଅନୁଲିପିଗୁଡ଼ିକ ସଜାଇ ସାରିବା ପରେ ଏହାକୁ ସଙ୍କେତ ନାମରେ ନାମିତ କରାଯାଏ । ଏହି ସଙ୍କେତ ନାମ ପ୍ରଦାନ ଚାରିଗୋଟି ପ୍ରଣାଳୀରେ କରା-ଯାଇପାରେ ।

*i*) ସ୍ଥାନ ପ୍ରଣାଳୀ

ଏଥିରେ ସଂଗୃହୀତ ଅଞ୍ଚଳର ପ୍ରଥମ ଅକ୍ଷରକୁ ସଙ୍କେତ ରୂପେ ଗ୍ରହଣ କରାଯାଏ । ଯଥା :—ଗଞ୍ଜାମରୁ ସଂଗୃହୀତ ପୋଥିକୁ 'ଗ' ରୂପେ, କଟକରୁ ସଂଗୃହୀତ ପୋଥିକୁ 'କ' ଭାବରେ ସୂଚିତ କରାଯାଇପାରେ । ଏଭଳି ପ୍ରଣାଳୀ ଅବଲମ୍ବନ କରି ଡ଼ଃ. ସୁକଥନକର ମହାଭାରତ ସମ୍ପାଦନା ସମୟରେ ଦକ୍ଷିଣାଞ୍ଚଳ ପୋଥିକୁ '*S*' ଓ ଉତ୍ତରାଞ୍ଚଳ ପୋଥିକୁ '*N*' ଭାବରେ ଗ୍ରହଣ କରିଛନ୍ତି ।

ii) ଅନୁଲିପିକାର ପ୍ରଣାଳୀ

ଏଥିରେ ଅନୁଲିପିକାରର ନାମ ଆଦ୍ୟ ଅକ୍ଷରକୁ ସଙ୍କେତ ରୂପେ ଗ୍ରହଣ କରାଯାଇପାରେ । ଏହି ନିୟମାନୁସାରେ ହାଡ଼ିବନ୍ଧୁଙ୍କ ଦ୍ୱାରା ପ୍ରସ୍ତୁତ ନକଲକୁ 'ହ' ପୋଥି ରୂପେ ସୂଚିତ କରାଯିବା ଦରକାର ।

iii) ପାଠ ସାମ୍ୟ ସମୂହ ପ୍ରଣାଳୀ

ଏଥିରେ ଯେଉଁ ଯେଉଁ ଅନୁଲିପିର ପାଠ ମଧ୍ୟରେ ସାମ୍ୟ ରହିଛି ତାକୁ ପ୍ରଥମ ସମୂହ, ଦ୍ୱିତୀୟ ସମୂହ ଆଦି ରୂପେ ଗ୍ରହଣ କରି ସୂଚନା ଦେଲେ ପ୍ର. ୧, ୨, ଦ୍ୱି. ୧, ୨ ଇତ୍ୟାଦି ଭାବେ ନିଆଯାଇପାରେ ।

iv) ପୁନରୁଦ୍ଧାର ପ୍ରଣାଳୀ

ଏହି ପ୍ରଣାଳୀ ଦ୍ୱାରା ଗୋଟିଏ ପୋଥିର ଅନୁଲିପି ପ୍ରସ୍ତୁତ ସମୟରେ ଯଦି କିଛି ଅଂଶ ପୋଥିରେ ନଥାଏ ତେବେ ଅନ୍ୟ ପୋଥିରୁ ସେହି ଅଂଶକୁ ପୁନରୁଦ୍ଧାର କରିବା ପରେ ସଙ୍କେତ ମାଧ୍ୟମରେ 'ପୁ. ୧' ଏଭଳି କରାଯାଇ-ପାରେ । ଡ଼ଃ. ମାତା ପ୍ରସାଦ ଗୁପ୍ତ ଏହି ପ୍ରଣାଳୀକୁ ଅବଲମ୍ବନ କରିଥିବା କଥା 'ବିସଲଦେବ ରାସ' ଗ୍ରନ୍ଥରେ ଦର୍ଶାଇଛନ୍ତି । (୧)

v) ପତ୍ର ସଂଖ୍ୟା ପ୍ରଣାଳୀ

ଯଦି କୌଣସି ପୋଥିରେ ଉପରୋକ୍ତ କୌଣସି ସୂଚନା ମିଳେ ନାହିଁ ଯାହାକୁ ଆଧାର କରି ସଙ୍କେତ ନାମ ଦିଆଯାଇ ପାରିବ, ସେ ସ୍ଥଳରେ ପୋଥିର ପତ୍ର ସଂଖ୍ୟାର ଆଦ୍ୟ ଅକ୍ଷରକୁ ନେଇ ସଙ୍କେତ ନାମରେ ପ୍ରୟୋଗ କରାଯାଇ ପାରିବ । ଯଦି ଗୋଟିଏ ପୋଥିର ପତ୍ର ସଂଖ୍ୟା ଅଶୀ ତେବେ ସଙ୍କେତ ଚିହ୍ନ ରୂପେ 'ଅ' ହେଉଛିକୁ ନିଆଯିବ ।

ଏଭଳି ବିବିଧ ପ୍ରଣାଳୀର ସୂଚନା ଥିଲେ ମଧ୍ୟ ଓଡ଼ିଶାରେ ପୋଥି ସଂପାଦନା ସମୟରେ ପୋଥିଗୁଡ଼ିକ ସମୟାନୁସାରେ ବା ଅଞ୍ଚଳାନୁସାରେ ସଜାଇ 'କ', 'ଖ', 'ଗ', ଆଦି ଭାବରେ ସଙ୍କେତ ନାମରେ ଚିହ୍ନିତ କରାଯାଉଅଛି ।

---

୧) ବିସଲଦେବ ରାସ—ଡ଼ଃ ମାତାପ୍ରସାଦ ଗୁପ୍ତ, ପୃ. ୫ ।

## ଗ) ପାଠ ପ୍ରସ୍ତୁତି

ପୋଥିର ସଙ୍କେତ ନାମ ଦିଆଯିବା ପରେ ଶୁଦ୍ଧପାଠ ନିମନ୍ତେ ପାଠ ପ୍ରସ୍ତୁତ କରାଯାଏ । ଏଥିପାଇଁ ପୋଥିରେ ଥିବା ଗୋଟିଏ ଦୁଇଟି ପଦକୁ କାଗଜର ଗୋଟିଏ ପାର୍ଶ୍ୱରେ ସ୍ପଷ୍ଟ ଭାବେ ଲେଖାଯାଏ । ପଦ ମଧ୍ୟରେ ଥିବା ପ୍ରତ୍ୟେକ ଧାଡ଼ିକୁ ୧, ୨, ୩ କ୍ରମରେ କିମ୍ବା ପ୍ରତ୍ୟେକ ପଦର ପ୍ରତି ଧାଡ଼ିକୁ କ, ଖ କ୍ରମରେ ଚିହ୍ନିତ କରାଯାଏ । ପ୍ରତ୍ୟେକ ଗ୍ରନ୍ଥରେ ଏହି ବିଧାନ ପ୍ରୟୋଗ କରାଯାଇ ସମ୍ପାଦନା ନିମନ୍ତେ ପାଠ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୁଏ । ପ୍ରତ୍ୟେକ ପୃଷ୍ଠାରେ ପାଠ ଲେଖି ସାରିବା ପରେ ଗୋଟିଏ ରେଖାକାଟି ଦେଇ ପାଠ ତୁଳନା କାର୍ଯ୍ୟ ଆରମ୍ଭ କରିବାକୁ ହୁଏ ।

## ଘ) ପାଠ ତୁଳନା

ପାଠ ପ୍ରସ୍ତୁତ ସରିବା ପରେ ପାଠ ତୁଳନା ନିମନ୍ତେ ଏକାଧିକ ଅନୁଲିପି ବା ପୋଥିକୁ ଗ୍ରହଣ କରାଯାଏ । ଏହି ସମୟରେ ପ୍ରତ୍ୟେକ ଛନ୍ଦ ଓ ପଦ ଯେପରି ସମ୍ପୂର୍ଣ୍ଣ ରୂପେ ତୁଳନା କରାଯାଇପାରେ ସେଥି ନିମନ୍ତେ ସାବଧାନ ରହିବା ଦରକାର । ତୁଳନା ସମୟରେ ପ୍ରତ୍ୟେକ ପଦର ଶବ୍ଦ ମିଳନ, ପାଠ ମଧ୍ୟରେ ଥିବା ଅଧିକ ପାଠ ଓ ପାଠ ଲୋପ ଆଦିକୁ ପୁଙ୍ଖାନୁପୁଙ୍ଖ ରୂପେ ଅନୁଧ୍ୟାନ କରିବା ଆବଶ୍ୟକ । ଆବଶ୍ୟକସ୍ଥଳେ ପାଠାନ୍ତର ସହ ଅଧିକ ପାଠ ଓ ପାଠ ଲୋପକୁ ମୂଳ ପାଠର ନିମ୍ନରେ ପାଦଟୀକା ଭଳି ଲେଖିବା ଉଚିତ ।

## ଙ) ପାଠ ନିର୍ମାଣ

ପାଠ ତୁଳନା ପରେ ପାଠର ପୁନର୍ନିର୍ମାଣ ନିମନ୍ତେ ବାହ୍ୟ ଓ ଅନ୍ତରଙ୍ଗ ସମ୍ଭାବନାକୁ ଭଲ ରୂପେ ବିଶ୍ଳେଷଣ କରି ପାଠ ନିର୍ମାଣ କରିବା ଦରକାର । ଏହା ହେଉଛି ପାଠର ପ୍ରାମାଣିକ ନିର୍ମାଣ ଓ ପାଠାଲୋଚନାର ଏକ ଅଙ୍ଗ ବିଶେଷ । ଏହି ପାଠ ନିର୍ମାଣରେ ସମସ୍ୟା ପାଠାଲୋଚନା ମଧ୍ୟରେ ଆସୁଥିବାରୁ

ଏଡ୍‌ଗରଟନ୍ (୨) 'ପଞ୍ଚତନ୍ତ୍ର'ର ସମ୍ପାଦନା ବେଳେ ବଂଶବୃକ୍ଷ ନିର୍ମାଣ କରିବାକୁ ବାଧ୍ୟ ହୋଇଥିଲେ

## ଗ) ବଂଶ ବୃକ୍ଷ

ପୋଥିର ପାଠ ତୁଳନା କରିବା ଦ୍ୱାରା ବଂଶବୃକ୍ଷ ନିର୍ମାଣ ସହଜ ସାଧ୍ୟ ହୋଇପାରେ । କେତେକ ସମ୍ପାଦକ ବଂଶବୃକ୍ଷକୁ ଅଞ୍ଚଳ ଦୃଷ୍ଟିରୁ ମଧ୍ୟ ନିର୍ଣ୍ଣୟ କରନ୍ତି । ବଂଶବୃକ୍ଷ ନିର୍ମାଣ କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ସମ୍ଭାବ୍ୟ ମୂଳପାଠର ନିକଟରେ ପହଞ୍ଚିବା ପାଇଁ ମାର୍ଗ ପ୍ରସ୍ତୁତ କରିବା । ଏହି ବଂଶବୃକ୍ଷ ନିର୍ମାଣ ନିମନ୍ତେ ପୋଥି ମଧ୍ୟରେ ଥିବା ମୁଖ୍ୟ ସମ୍ବନ୍ଧ (*Primery interrelationship*) ଓ ଗୌଣ ସମ୍ବନ୍ଧ (*Secondary interrelation-ship*)କୁ ପର୍ଯ୍ୟାଲୋଚନା କରିବା ଆବଶ୍ୟକ । ପୋଥି ମଧ୍ୟରେ ଥିବା ପାଠ ଲୋପ ଓ ଅଧିକ ପାଠ ଏହି ବଂଶ ବୃକ୍ଷ ନିର୍ମାଣରେ ମଧ୍ୟ ବହୁତ ସହାୟତା କରେ । କେବଳ ସେତିକି ନୁହେଁ ଅନୁଲିପିଗୁଡ଼ିକୁ ବାରମ୍ବାର ପଢ଼ିବା ଦ୍ୱାରା ବା ପାଠ ତୁଳନାର ସମନ୍ୱିତ ତାଲିକା (*Table*) ପ୍ରସ୍ତୁତ ଦ୍ୱାରା ଅନୁଲିପି ମଧ୍ୟରେ ଥିବା ସାମ୍ୟ ଓ ବୈଷମ୍ୟ ସ୍ପଷ୍ଟ ରୂପେ ଜଣା ପଡ଼ିଯାଏ । ଫଳରେ ସାମ୍ୟ ଥିବା ଅନୁଲିପିଗୁଡ଼ିକୁ ଗୋଟିଏ ଗୋଟିଏ ପରିବାରର ଅନ୍ତର୍ଭୁକ୍ତ କରି ବଂଶ ବୃକ୍ଷ ନିର୍ମାଣ କରିବାକୁ ହୁଏ । ଉଦାହରଣ ସ୍ୱରୂପ ଗୋଟିଏ ପୋଥିର ୧୧ ଗୋଟି ପ୍ରତିଲିପି ମିଳୁଛି । ଏଥିମଧ୍ୟରୁ ସବୁଠାରୁ ପ୍ରାଚୀନ ପ୍ରତିଲିପି ତିନୋଟି ହେଉଛି କ, ଖ, ଗ । ଏହି ତିନୋଟି ପ୍ରାଚୀନ ପ୍ରତିଲିପି ୩ଟି ଅଞ୍ଚଳରୁ ସଂଗୃହୀତ । ଏହାକୁ ବାଦ୍ ଦେଲେ ଆଉ ଆଠ ଗୋଟି ଏହି ପ୍ରାଚୀନ ପୋଥି ସବୁର ନକଲ । ତେଣୁ ପାଠ ସମ୍ପାଦନା ବେଳେ ନିମ୍ନୋକ୍ତ ପ୍ରକାରେ ବଂଶ ବୃକ୍ଷଟିଏ ନିର୍ମାଣ କରି ପାଠ ତୁଳନା ତଥା ସଂଶୋଧନ କରି ସମ୍ଭାବ୍ୟ ମୂଳପାଠ ନିକଟରେ ପହଞ୍ଚିବା ସହଜ ସାଧ୍ୟ ହୋଇପାରିବ । ଏଥିପାଇଁ ପାଠ ତୁଳନା ନିମ୍ନୋକ୍ତ କରିବା ଦରକାର ।

---

୨) *The Panchatantra Reconstructed (Vol-ii) by Franklin Edgerton, 1929, p. 48*




## ଛ) ଆଦର୍ଶ ପୋଥି ନିର୍ଦ୍ଧାରଣ

ଆଦର୍ଶ ପୋଥି ନିର୍ଦ୍ଧାରଣ ନିମନ୍ତେ ସବୁଠାରୁ ପ୍ରାଚୀନ ପୋଥି ବା ଲେଖକର ରଚନା ସ୍ଥଳର ନିକଟତମ ସ୍ଥାନର ପୋଥିକୁ ଗ୍ରହଣ କରିବା ଦରକାର । କାରଣ ପୋଥିର ଯେତେ ଅନୁଲିପି ପ୍ରସ୍ତୁତ ହୋଇଥିବ ସେଥିରେ କାଳକ୍ରମେ ସେତେ ଅଧିକ ଭ୍ରମ,ଦ ପ୍ରବେଶ କରୁଥିବାର ସମ୍ଭାବନା ରହିଛି । ତେଣୁ ଯେତେ ପ୍ରାଚୀନ ପୋଥି ଅର୍ଥାତ୍ ରଚୟିତାର ନିକଟବର୍ତ୍ତୀ ସମୟର ପୋଥି ମିଳିବ ତାକୁ ଆଦର୍ଶ ପୋଥି ରୂପେ ଗ୍ରହଣ କରିବା ବିଶେଷ ବିଶ୍ୱାସ ଯୋଗ୍ୟ ପରି ମନେ ହୁଏ ।

## ଜ) ଶୁଦ୍ଧ ପାଠ ନିର୍ଣ୍ଣୟ

ଆଦର୍ଶ ପୋଥି ନିର୍ଦ୍ଧାରଣ ପରେ ସମ୍ପାଦନାର ଶେଷ ସୋପାନ ରୂପେ ଶୁଦ୍ଧପାଠ ନିର୍ଣ୍ଣୟ କରିବାକୁ ହେବ । ଏଥି ନିମନ୍ତେ ସମ୍ପାଦକ ଆଦର୍ଶ ପୋଥି ସହିତ ଅନ୍ୟ ପୋଥିଗୁଡ଼ିକୁ ତୁଳନା କରି ପାଠ ସଂଶୋଧନ କରିବାକୁ ହେବ । ପାଠ ସଂଶୋଧନ ସମ୍ପାଦନାର ଏକ ବିଶିଷ୍ଟ କାର୍ଯ୍ୟ । ଏଥି ନିମନ୍ତେ ସମ୍ପାଦକ ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ଦରକାର । ସମ୍ପାଦକ ଯେଉଁ ଯେଉଁ ପୋଥିକୁ ସମ୍ପାଦନା ନିମନ୍ତେ ଗ୍ରହଣ କରିବ ସେହି ସବୁ ପୋଥି ସମ୍ପର୍କରେ ସୁସ୍ପଷ୍ଟ ଧାରଣା ରହିଥିବା ଆବଶ୍ୟକ । ମନେକର ସମ୍ପାଦକ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର କୌଣସି ଗୋଟିଏ ପୋଥିକୁ ସମ୍ପାଦନା

ସମ୍ପାଦନା ଗ୍ରହଣ କରିବାକୁ ଚାହିଁଲେ ଭଞ୍ଜ ଯୁଗର ପୃଷ୍ଠଭୂମି, ପରମ୍ପରା, ସାହିତ୍ୟ ସୃଷ୍ଟି ନିମନ୍ତେ ପରିବେଶ, ସାହିତ୍ୟିକ ପ୍ରଭାବ, ଉପାଦାନ, ଭଞ୍ଜଙ୍କର ରଚନା ଶୈଳୀ, ଭଞ୍ଜଙ୍କର ଇତିବୃତ୍ତ, ଆହରଣ ଓ ସମୀକରଣର ପରିସର ସମ୍ପର୍କରେ ସମ୍ୟକ୍ ଜ୍ଞାନ ଅର୍ଜନ କରିଥିବା ଉଚିତ । ଏ ସମସ୍ତ ଜ୍ଞାନ ଦ୍ୱାରା ସମ୍ପାଦକ ପାଣ୍ଡୁଲିପିର ପରୀକ୍ଷା ନିରୀକ୍ଷା କରି ଶୁଦ୍ଧପାଠ ନିର୍ଣ୍ଣୟ କରିବା ସହଜ ସାଧ୍ୟ ହୋଇପାରିବ । ଏହି ପରୀକ୍ଷା ନିରୀକ୍ଷା କରିବା ନିମନ୍ତେ ଚାରି ପ୍ରକାର ପାଠ ପରୀକ୍ଷଣ ସିଦ୍ଧାନ୍ତକୁ ଗ୍ରହଣ କରିବା ବିଧେୟ । ଏହି ଚାରି ପ୍ରକାର ସିଦ୍ଧାନ୍ତ ହେଉଛି :—

୧) ସ୍ୱୀକରଣ ୨) ସନ୍ଦେହ ୩) ପରିତ୍ୟାଗ ୪) ସଂଶୋଧନ

୧) ସ୍ୱୀକରଣ:—ପାଠରେ ଯାହାଅଛି ତାକୁ ସିଧାସଳଖ ଭାବରେ ବିନା ବାଧାରେ ଗ୍ରହଣ କରିପିବାକୁ ସ୍ୱୀକରଣ କୁହାଯାଏ ।

୨) ସନ୍ଦେହ:—ପାଠରେ ଯାହା କୁହାଯାଇଛି ତାକୁ ସନ୍ଦେହ କରିବା ।

୩) ପରିତ୍ୟାଗ:—ମୂଳ ଲେଖକର ରଚନାଶୈଳୀ ଓ ଶବ୍ଦ ପ୍ରୟୋଗ ସହିତ ଯାହା ସାମ୍ୟ ରକ୍ଷା କରୁନଥିବା ଅଂଶ, କିମ୍ବା ପାଠର ବିଚାର ସମୟରେ ଅନମନୀୟ ବ୍ୟଞ୍ଜନ, ସମ୍ବନ୍ଧହୀନତା ବିଷୟ ବିନ୍ୟାସ, ଅର୍ଥହୀନ ପୁନରୁକ୍ତି ଆଦିକୁ ପାଠରୁ ପରିତ୍ୟାଗ କରାଯାଇପାରେ । ପାଠରେ ଏଭଳି ଅଂଶ ପରିଲକ୍ଷିତ ହେଲେ ପାଠଟି ଶୁଦ୍ଧ ନୁହେଁ ଜାଣି ତାକୁ ଆବଶ୍ୟକୀୟ ସଂଶୋଧନ କରିବା ଦରକାର ।

୪) ସଂଶୋଧନ:—ପାଠକୁ ମୂଳଗ୍ରନ୍ଥର ପାଠାନୁସାରେ ଆବଶ୍ୟକୀୟ ସଂଶୋଧନ କରିବାକୁ ହୁଏ ।

ଏହି ପାଠ ସଂଶୋଧନ ସମୟରେ ସମ୍ପାଦକ ଆଦର୍ଶହୀନ ବ୍ୟକ୍ତିଗତ ସିଦ୍ଧାନ୍ତକୁ ନେଇ ଉପଯୁକ୍ତ ପାଠକୁ ବିବେଚନା କରିବା ଉଚିତ । ଏଥିପାଇଁ ମୂଳ ଲେଖକର ଭାବ, ଅଭିବ୍ୟକ୍ତି କୌଶଳ ତଥା ଶୈଳୀ ସମ୍ପର୍କରେ ସମ୍ପାଦକ ସମ୍ପୂର୍ଣ୍ଣ ସଚେତନ ରହିବା ଆବଶ୍ୟକ । ଏହିକାର୍ଯ୍ୟ ପରେ ସମ୍ପାଦକଙ୍କ ପାଠର ବିଚାର ବିଶ୍ଳେଷଣ ବା ପର୍ଯ୍ୟାଲୋଚନା କରି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୁଏ ।

## ପାଠାଲୋଚନା

ପ୍ରତ୍ୟେକ ଗ୍ରନ୍ଥର ମୂଳରୂପ ନିର୍ଦ୍ଧାରଣ ସମ୍ପର୍କରେ ସମ୍ପାଦକ ବିଭିନ୍ନ ଦିଗରୁ ଆଲୋଚନା ତଥା ପର୍ଯ୍ୟାଲୋଚନା କରି ଉପଯୁକ୍ତ ଶବ୍ଦ, ବାକ୍ୟ ତଥା ପଦର ପ୍ରୟୋଗ ଦ୍ୱାରା ଶୁଦ୍ଧପାଠ ନିର୍ଣ୍ଣୟ କରିବା ଦରକାର । ଶୁଦ୍ଧପାଠ ନିର୍ଣ୍ଣୟପରେ ସେହି ପାଠ ଉପରେ ନିର୍ଭର କରି ଯେଉଁ ବିଚାର ବିଶ୍ଳେଷଣ କରାଯାଏ ତାହାକୁ 'ପାଠାଲୋଚନା' କହନ୍ତି । ପାଠାଲୋଚନା ସାଧାରଣତଃ ଅନୁଦାର (*Conservative*) ଓ ଉଦାର (*Liberal*) ବିଚାରଧାରା ଉପରେ ପର୍ଯ୍ୟବସିତ ।

କ) ଅନୁଦାର ବିଚାରଧାରା:—

ଅନୁଦାର ବିଚାରଧାରା ସାଧାରଣତଃ ରକ୍ଷଣଶୀଳ ମନୋବୃତ୍ତିର ପରିଚାୟକ । ଏହି ପ୍ରକାର ବିଚାରଧାରାରେ ପାଠାଲୋଚନା କରିବା ବେଳେ ସମ୍ପାଦକଙ୍କୁ ବୈଜ୍ଞାନିକ ପଦ୍ଧତିର ଅନୁସରଣ କରିବାକୁ ପଡେ । ଏହି ଅନୁଦାର ବିଚାରଧାରାର ଗୋଟିଏ ଦିଗ ହେଉଛି ଶବ୍ଦାଦିର ଅର୍ଥ ତଥା ଭାବକୁ ପରୀକ୍ଷା ନିରୀକ୍ଷା କରି ପ୍ରତିଲିପିର ପାଠକୁ ଜବରଦସ୍ତ ଅର୍ଥ କରାଯାଇ ଗ୍ରହଣ କରିବା ଏହାର ଦ୍ୱିତୀୟ ଦିଗଟି ହେଉଛି ମୂଳଗ୍ରନ୍ଥରେ ଥିବା ବୈଲକ୍ଷଣ୍ୟକୁ ଅସ୍ୱୀକାର କରାନଯାଇ ତାହାକୁ ପରମ୍ପରାଗତ ବିଷମଗତ ଭାବେ ସ୍ୱୀକାର କରିବା । ମୋଟ ଉପରେ ଏହି ବିଚାରଧାରାର ବଶବର୍ତ୍ତୀ ସମ୍ପାଦକ ପାଠକୁ ଠିକ୍‌ରୂପେ ସଜାଡିବା ପରିବର୍ତ୍ତେ ପାଠର ବ୍ୟାଖ୍ୟା ଉପରେ ଅଧିକ ଜୋର ଦିଅନ୍ତି । ଏହାକୁ ସମ୍ପାଦକର ଏକ ବଡ଼ ଦୁର୍ବଳତା ବୋଲି ମଧ୍ୟ କୁହାଯାଇପାରେ । ତେଣୁ ଅନୁଦାର ପାଠାଲୋଚକ ବୈଜ୍ଞାନିକ ବ୍ୟାଖ୍ୟାକୁ ଅନାବଶ୍ୟକ ରୂପେ ପ୍ରାଧାନ୍ୟ ଦିଏ ।

ଖ) ଉଦାର ବିଚାରଧାରା:—

ଏ ଶ୍ରେଣୀର ପାଠାଲୋଚକମାନେ ସମାନରୂପର ଆଧାର ପରେ ବିଶେଷ ପ୍ରାଧାନ୍ୟ ଦେଇଥାନ୍ତି । ଏମାନେ ବିକୃତ ତଥା ସନ୍ଦେହପୂର୍ଣ୍ଣ ପାଠ ଅପେକ୍ଷା ଆନୁମାନିକ ପାଠକୁ ଶ୍ରେୟସ୍କର ରୂପେ ମାନନ୍ତି । ଅର୍ଥାତ୍ ଆଲୋଚନାତ୍ମକ ସଂଶୋଧନ ଦ୍ୱାରା ନିର୍ଦ୍ଧାରିତ ପାଠକୁ ଏମାନେ ସନ୍ଦେହ କରନ୍ତି । ତେଣୁ ଏହି ପାଠ ସ୍ଥାନରେ ମୂଳ ଲେଖକ ଦ୍ୱାରା ଲେଖା ନ ଯାଇଥିବା ପାଠକୁ ମଧ୍ୟ ଗ୍ରହଣ କରିନଥାନ୍ତି ।

ଏହିପରି ଦୁଇପ୍ରକାର ବସ୍ତୁରଧାର ଦ୍ୱାରା ପାଠାଲୋଚନା କରାଗଲେ ମଧ୍ୟ ପାଠାଲୋଚନା ସମୟରେ ଗୃହୀତ ପୋଥିର ଲିପି, ଭାଷା ଆଦିକୁ ଦୃଷ୍ଟିରେ ରଖି ଆଲୋଚନା କରାଯାଏ । ଏତଦ୍ ବ୍ୟତୀତ ପାଠରେ ଥିବା ଅଶୁଦ୍ଧି, ଶବ୍ଦବିକାର, ପ୍ରମାଦ ପରିମାଣ, ବୃଦ୍ଧି ବା ଲୋପ (ପ୍ରକ୍ଷେପ ବା ନିକ୍ଷେପ) ଅଂଶ ଆଦିର ଆଲୋଚନା କରିବାକୁ ହୁଏ । ପ୍ରକ୍ଷିପ୍ତ ଅଂଶଯୋଗ କରିବାର ବିଭିନ୍ନ କାରଣ ମଧ୍ୟରୁ କେଉଁ କାରଣଟି ଉପଯୁକ୍ତ ତାହା ବିବେଚନା କରିବା ଏକାନ୍ତ ଅପରିହାର୍ଯ୍ୟ । ଏହି ବିବେଚନା କେତେ ଦୂର ଯୁକ୍ତି ସଙ୍ଗତ ତାହା ପାଠାଲୋଚନାରେ ଦିଆଯିବା ଆବଶ୍ୟକ । କାରଣ ପାଠାନୁସନ୍ଧାନ ସମୟରେ ଏଭଳି ପ୍ରକ୍ଷେପ ବା କ୍ଷେପକ ଅଂଶକୁ ବୈଜ୍ଞାନିକ ପଦ୍ଧତି ଦ୍ୱାରା ବିବେଚନା କରି ପାଠରୁ ବାଦ୍ ଦେଇ ପ୍ରାମାଣିକ ତଥା ସମ୍ଭାବ୍ୟ ମୂଳରୂପ ନିର୍ଦ୍ଧାରଣ କରିବା ସଂପାଦକର କାର୍ଯ୍ୟ । ଏହି ବୈଜ୍ଞାନିକ ପ୍ରଣାଳୀ ମଧ୍ୟରେ ଇଚ୍ଛା ବା ଅବୈଜ୍ଞାନିକ ଢଙ୍ଗ ରହିବା ଅନାବଶ୍ୟକ । ଯେଉଁଭଳି ଅବୈଜ୍ଞାନିକ ଢଙ୍ଗ ବା ଇଚ୍ଛାଦ୍ୱାରା ହୋମରଙ୍କ କୃତିକୁ ସଂପାଦନ କରିବା ସମୟରେ ସଂପାଦକ (ଜନ୍‌ଡୋଟ୍‌ସ) ବହୁତ ଅଂଶକୁ ବାଦ୍ ଦେଇଥିଲେ । ପରବର୍ତ୍ତୀ ସମୟରେ ବୈଜ୍ଞାନିକ ପଦ୍ଧତି ଦ୍ୱାରା ଏସମସ୍ତ ଅଂଶ ପ୍ରକ୍ଷିପ୍ତ ନଥିବା କଥା ଜଣାପଡ଼ିଲା । (୧) ସେହିପରି ପ୍ରକ୍ଷେପ ଓ କ୍ଷେପକ ଅଂଶ ନିର୍ଦ୍ଧାରଣ ସମୟରେ ବିଶେଷ ସତର୍କତା ଅବଲମ୍ବନ କରିବା ଦରକାର ।

ପାଠାଲୋଚନା ସମୟରେ ଶବ୍ଦ ଓ ଅର୍ଥର ବିଶେଷ ମହତ୍ତ୍ୱ ପ୍ରତି ଦୃଷ୍ଟି ଦେବା ବିଧେୟ । ଏହି ଶବ୍ଦ ଓ ଅର୍ଥର ମହତ୍ତ୍ୱ କେବଳ ଭାଷାବିଜ୍ଞାନ ଦୃଷ୍ଟିରୁ ନୁହେଁ ସାହିତ୍ୟ ଦୃଷ୍ଟିରୁ ମଧ୍ୟ ପର୍ଯ୍ୟାଲୋଚନା କରିବା ଦରକାର । ତେଣୁ ଡଃ. କିଶୋରୀଲାଲ ଏହି ଦୃଷ୍ଟିରୁ ବୈଜ୍ଞାନିକ ଓ ସାହିତ୍ୟିକ ସଂପାଦନା ମାର୍ଗର ଉପଯୋଗ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଆଧୁନିକ ଯୁଗରେ ବୈଜ୍ଞାନିକ ସଂପାଦନା ପଦ୍ଧତିରେ ଶବ୍ଦ ଉପରେ ବିଶେଷ ଗୁରୁତ୍ୱ ପ୍ରଦର୍ଶନ କରାଯିବା ବେଳେ ସାହିତ୍ୟିକ ସଂପାଦନା ପଦ୍ଧତିରେ ଅର୍ଥ ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଉଅଛି । କିନ୍ତୁ ଆଜିକାଲି କେତେକ ଅଧିକତର ପାଠ

---

୧) *Dictionary of Greek and Roman Biography and Mythology, Edited by W. Smith, P. 510-512.*

ସମ୍ପାଦନା ସମୟରେ ଯେଉଁ ଭ୍ରାନ୍ତି ସୃଷ୍ଟି ହେଉଛି ତାହାର ମୂଳ କାରଣ ହେଉଛି ଉପଯୁକ୍ତ ଅର୍ଥ ନବୁଝି ସମ୍ପାଦନା କରିବା । (୨)

ଉଦାହରଣ ସ୍ୱରୂପ ଓଡ଼ିଆ ଭାଗବତର ବିଭିନ୍ନ ସଂସ୍କରଣରେ ନିମ୍ନୋକ୍ତ ପଦଟିର ଦୁଇଟି ରୂପ ଦେଖିବାକୁ ମିଳେ । ଯଥା:—

୧) "ଆପଣା ହସ୍ତେ ଜିହ୍ୱା ଛେଦି
କେ ତା'ର ଅଛି ପ୍ରତିବାଦୀ ।"

୨) "ଆପଣା ଦନ୍ତେ ଜିହ୍ୱା ଛେଦି
କେ ତା'ର ଅଛି ପ୍ରତିବାଦୀ ।"

ପ୍ରଥମ ଉଦାହରଣରେ 'ହସ୍ତେ' ଥିବା ବେଳେ ଦ୍ୱିତୀୟ ଉଦାହରଣରେ 'ଦନ୍ତେ' ଶବ୍ଦର ପ୍ରୟୋଗ କରାଯାଇଛି । ପ୍ରଥମଟିର ଅର୍ଥ ହସ୍ତଦ୍ୱାରା ଜିହ୍ୱା ଛେଦନକୁ ବୁଝାଉଥିବା ବେଳେ ଦ୍ୱିତୀୟଟିରେ ଦନ୍ତଦ୍ୱାରା ଜିହ୍ୱା ଛେଦନ କରିବା କଥାକୁ ବୁଝାଉଅଛି । କେତେକ ପୋଥିରେ ଦନ୍ତେ ଥିବା ସତ୍ତ୍ୱେ ହାତରେ ଜିହ୍ୱା ଛେଦନକୁ ପାଠାନ୍ତର ବେଳେ ଗ୍ରହଣ କରନ୍ତି । ପୁନଶ୍ଚ ସଂସ୍କୃତ ପାଠକୁ ନିର୍ଭର କରି ଦନ୍ତେକୁ ଶୁଦ୍ଧ ପାଠ ରୂପେ ଗ୍ରହଣ କରାଯାଇ-ପାରେ । କିନ୍ତୁ ବିଭିନ୍ନ ଅଞ୍ଚଳର ପୋଥି ଉପରେ ନିର୍ଭର କରି ତଥା ଅଧିକାଂଶ ପୋଥିରେ ହସ୍ତେ ଥିଲେ 'ହସ୍ତେ' ଶବ୍ଦଟି ଗ୍ରହଣୀୟ । ତେଣୁ ପାଠ ଗ୍ରହଣ ବେଳେ ଯେଉଁଟି ଶୁଦ୍ଧପାଠ ତାକୁ ପାଠ ମଧ୍ୟରେ ରଖି ଅନ୍ୟ ପାଠଟିକୁ ପାଠାନ୍ତରରେ ଦିଆଯିବା ଆବଶ୍ୟକ । ଏପରିକି ଅନୁମାନରୁ ଯଦି କୌଣସି ସ୍ଥାନରେ ଅନ୍ୟ କୌଣସି ଶବ୍ଦ ପ୍ରୟୋଗ କରାଯାଏ ତାକୁ ମଧ୍ୟ ପାଠାନ୍ତରରେ ଦିଆଯାଇପାରେ ।

ପରିଶେଷରେ ପାଠାଲୋଚନା ସମୟରେ ପାଠର ପୁନଃନିର୍ମାଣ ନିମନ୍ତେ ସାଙ୍ଖ୍ୟକୀୟ, ତୁଳନାତ୍ମକ ଭାଷାବିଜ୍ଞାନ, ତଥା ସଙ୍କଳନାତ୍ମକ ପଦ୍ଧତିର ସାହାଯ୍ୟ ସମ୍ପର୍କରେ ଆଲୋଚନା କରିବା ଦରକାର ।



୨) ପ୍ରାଚୀନ ହିନ୍ଦୀ କାବ୍ୟ : ପାଠ ଏବଂ ଅର୍ଥ ବିବେଚନ—ଡଃ କିଶୋରୀ-ଲାଲ (ସମ୍ମେଳନ ପତ୍ରିକା ଚୈତ୍ର-ଭାଦ୍ରପଦ ଅଙ୍କ ୧୯୯୨) ପୃ. ୧୭୬ ।

# ପାଣ୍ଡୁଲିପି ସଂପାଦନାର ଇତିହାସ



ଭାରତରେ ପାଣ୍ଡୁଲିପି ସଂପାଦନାର ଗତାନୁଗତିକ ଇତିହାସ ଖୋଜି ବସିଲେ ନିରାଶ ହେବାକୁ ପଡ଼ିନାହିଁ । କାରଣ ଭାରତ ତଥା ଭାରତ ବାହାରର ବହୁ ଆଲୋଚକ ଭାରତ ତଥା ବିଦେଶରେ ସୁରକ୍ଷିତଥିବା ସଂସ୍କୃତ, ପ୍ରାକୃତ ଅଥବା ଆଧୁନିକ ଭାରତୀୟ ଭାଷାରେ ଲିଖିତ ହସ୍ତଲିଖିତ ଗ୍ରନ୍ଥକୁ ସଂପାଦନା କରିବା ସଙ୍ଗେ ସଙ୍ଗେ ପାଠାଲୋଚନା କାର୍ଯ୍ୟ ଆରମ୍ଭ କରିଥିଲେ । ପାଶ୍ଚାତ୍ୟ ଜଗତରେ ବିଶେଷ କରି ୟୁରୋପର ବିଦ୍ୱାନମାନେ ଏହି କର୍ମରେ ନିଜକୁ ନିୟୋଜିତ କରିଥିଲେ ମଧ୍ୟ ସେମାନଙ୍କ ଦ୍ୱାରା ନିର୍ଦ୍ଧାରିତ ପନ୍ଥା ଭାରତୀୟ ପରିସ୍ଥିତି ତଥା ପରିବେଶ ପାଇଁ ଅନୁକୂଳ ନଥିଲା । ତେଣୁ ଭାରତୀୟ ଗ୍ରନ୍ଥର ସଂପାଦନା ଭାରତର ପରିସ୍ଥିତି ତଥା ପରିବେଶ ଉପଯୋଗୀ ହେବା ନିମନ୍ତେ ଏକ ପ୍ରଣାଳୀକୁ ଡ଼ଃ ସୁକ୍‌ଥନକର ନିର୍ଦ୍ଧାରଣ କରିଥିଲେ । ଡ଼ଃ ସୁକ୍‌ଥନକରଙ୍କ ଏହି ନିର୍ଦ୍ଧାରଣ ପୂର୍ବରୁ ଆର.ଜି. ଭଣ୍ଡାରକର ଭବଭୂତିଙ୍କ ମାଳତୀ ମାଧବ (୧୮୭୬), ଆର. ପିସେଲ କାଳିଦାସଙ୍କ ଶକୁନ୍ତଳମ୍ (୧୮୭୭), ଷ୍ଟେନ୍‌କୋନ୍ ରାଜଶେଖରଙ୍କ କର୍ପୂରମଞ୍ଜରୀ (୧୯୦୧), ଫ୍ରାଙ୍କଲିନ୍ ଏଡ଼ଗର୍ଟନ ପଞ୍ଚତନ୍ତ୍ର ରିକନ୍‌ଷ୍ଟ୍ରକ୍‌ଟେଡ୍ (୧୯୨୪), ଟୋଡ଼ରମଲ ଭବଭୂତିଙ୍କ ମହାବୀର ଚରିତ (୧୯୨୮), ଜାକୋବିଙ୍କ ଦ୍ୱାରା ବାଲ୍ମୀକି ରାମାୟଣ ଆଦିଗ୍ରନ୍ଥର ସମ୍ଭାବ୍ୟପାଠ ଓ ପାଠାଲୋଚନା ହୋଇସାରିଥିଲା । ଡ଼ଃ ସୁକ୍‌ଥନକର ଏଥିରେଥିବା ଆଲୋଚନା ପଦ୍ଧତିଦ୍ୱାରା ବିଶେଷ ସନ୍ତୁଷ୍ଟ ନ ହୋଇ ୧୯୩୩ ମସିହାରେ ମହାଭାରତର ସମ୍ଭାବ୍ୟପାଠ ନିର୍ଦ୍ଧାରଣପୂର୍ବକ ଭାରତୀୟ ପରିବେଶକୁ ଖାପ ଖୁଆଇ ପାଠାଲୋଚନା ପଦ୍ଧତିର ସୂଚନା ଏହି ଗ୍ରନ୍ଥର ମୁଖବନ୍ଧରେ ପ୍ରଦାନକରିଥିଲେ । ଏହାଙ୍କ ପରେ ଭାରତରେ ପାଣ୍ଡୁଲିପି ସଂପାଦନା ଓ ପାଠାଲୋଚନା ପ୍ରକ୍ରିୟା ବିଶେଷ ଭାବରେ ଆରମ୍ଭ ହୋଇଥିଲା ।

ଏହି ସମୟରେ ପାଶ୍ଚାତ୍ୟ ବିଦ୍ୱାନ ଲୁଡ୍‌ୱିଗ୍ ଏଲ୍‌ସଡ୍ରାଫ ୧୯୩୬ରେ ହରିବଂଶ, ଭାରତୀୟ ଶିକ୍ଷାବିତ୍ ପି.ଏଲ୍. ବୈଦ୍ୟ ୧୯୩୭ରେ ପୁଷ୍ପଦନ୍ତଙ୍କ ମହାପୁରାଣ, ଏ.ଏନ୍. ଉପାଧ୍ୟାୟ ୧୯୩୭ରେ ଯୋଗୀନ୍ଦ୍ରଙ୍କର ପରମାତ୍ମ ପ୍ରକାଶ, ବିଶ୍ୱବନ୍ଧୁ ଶାସ୍ତ୍ରୀ ୧୯୪୦ରେ ବାଲ୍ମୀକଙ୍କର ରାମାୟଣ ଆଦିର ସମ୍ପାଦନା କାର୍ଯ୍ୟ କରିଥିଲେ । ଏତଦ୍‌ବ୍ୟତୀତ ବହୁ ବିଦ୍ୱାନ ଭାରତର ବିଭିନ୍ନ ଭାଷାରେ ସମ୍ପାଦନା ଓ ପାଠାଲୋଚନା କାର୍ଯ୍ୟ ଆରମ୍ଭ କରିଥିଲେ ମଧ୍ୟ ଓଡ଼ିଆ ଭାଷାରେ ଏହି କର୍ମର ଅଧୁମାରମ୍ଭ ଅତ୍ୟନ୍ତ ଅର୍ବାଚୀନ ।

## ଓଡ଼ିଶାରେ ପାଣ୍ଡୁଲିପି ସଂପାଦନାର ଇତିହାସ

ଓଡ଼ିଆ ଭାଷା ପୂର୍ବ ଭାରତୀୟ ଭାଷା ବଂଗଳା, ଅସମୀୟାଠାରୁ ପ୍ରାଚୀନ ବୋଲି ବଂଗଳାର ଖ୍ୟାତନାମା ଗବେଷକ ଡକ୍ଟର ସୁନୀତି କୁମାର ଚାଟାର୍ଜୀ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । (୧) କିନ୍ତୁ ଦୁଃଖର କଥା ପ୍ରାଚୀନ କାଳରୁ ଓଡ଼ିଆ ଭାଷାରେ ବହୁ ଗ୍ରନ୍ଥ ତାଳପତ୍ରରେ ରଚିତ ହୋଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ ମଧ୍ୟ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଶେଷ ପର୍ଯ୍ୟନ୍ତ ଏହାର ଉଦ୍ଧାର ନିମନ୍ତେ ପ୍ରଚେଷ୍ଟା ହୋଇ ନଥିଲା । ତେଣୁ ଖ୍ରୀ. ୧୮୫୩ ମସିହାରେ ତତ୍କାଳୀନ କମିସନର ରିକେଟ ସାହେବ ଏ ଦେଶର ସାହିତ୍ୟ ସମ୍ପର୍କରେ ନିଜର ମତବ୍ୟକ୍ତ କରି କହିଥିଲେ —

---

(୧) "Of these three speeches Oriya, Bengali, Assamese, Oriya has preserved a great many archaic features, in both grammar and pronounciation and it may be said without travesty of Linguistic truth that Oriya is the eldest of the three sisters, when we consider the archaic character of the language." Indian Historical Quarterly, 1949, P. 337.

"As I have said in reporting on Cuttack, there are so few books, they may be all read through in few days." (୨)

ଖ୍ରୀ. ୧୮୪୭/୪୮ରେ କଟକରେ ଭର୍ଣ୍ଣାକୁଲାର ସ୍କୁଲରେ ଛାତ୍ରମାନଙ୍କର ଉପସ୍ଥାନ କମ୍ ଦେଖି କଟକ ଜିଲ୍ଲା ମାଜିଷ୍ଟ୍ରେଟ ବାଉରିଂ ସାହେବ "ଓଡ଼ିଆ ଭାଷାକୁ ବଙ୍ଗ ଭାଷାର ଉପଭାଷା" ବୋଲି ମତ ଦେଇଥିଲେ । ଏପରିକି ଖ୍ରୀ. ୧୮୬୮ରେ ପ୍ରତ୍ନତାତ୍ତ୍ୱିକ ଗବେଷଣା ନିମନ୍ତେ ବାବୁ ରାଜେନ୍ଦ୍ର ଲାଲ ମିତ୍ର ଓଡ଼ିଶାକୁ ଆସି କଟକ ଡିବେଟିଂକ୍ଲବରେ ଇଂରାଜୀ ଭାଷାରେ ଉଦ୍‌ବୋଧନ ଦେଇ ଯାହା କହିଥିଲେ ତାର ଓଡ଼ିଆ ତର୍ଜମା ହେଉଛି, "ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବ ସେ ସର୍ବାଗ୍ରେ ଉତ୍କଳଭାଷା ଉଠାଇଦେଇ ବଂଗଭାଷା ପ୍ରଚଳନ କରିବେ, କାରଣ ଯେତେକାଳ ପର୍ଯ୍ୟନ୍ତ ଉତ୍କଳଭାଷା ଉଠିଯାଇ ନାହିଁ, ସେତେକାଳ ପର୍ଯ୍ୟନ୍ତ ଏଦେଶ ଉନ୍ନତ ହେବା ଅସମ୍ଭବ ।" କେବଳ ସେତିକି ନୁହେଁ ଓଡ଼ିଶାର ଲୋକ ସଂଖ୍ୟା ଅଳ୍ପ ଥିବାରୁ ଏମାନଙ୍କୁ ନେଇ ସ୍ୱତନ୍ତ୍ର ଭାଷା ସୃଷ୍ଟି କରିବା ଅସମ୍ଭବ ବୋଲି ସେ ମତ ଦେଇଥିଲେ । (୩) ଏଭଳି ଏକ ବିସ୍ଫୁରକର ମୁହୂର୍ତ୍ତରେ ଖ୍ରୀ. ୧୮୭୦ ମସିହାରେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ "ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ" ନାମକ ଖଣ୍ଡିଏ ବହି ବଂଗଳାକ୍ଷରରେ ମୁଦ୍ରଣ କରି ଓଡ଼ିଆ ଭାଷାର ବିଲୋପ ସାଧନ ନିମନ୍ତେ ଉଦ୍ୟମ କରିଥିଲେ । କିନ୍ତୁ 'ଉତ୍କଳଦୀପିକା' ଏ ଘଟଣାରେ ଘୋର ପ୍ରତିକ୍ରିୟା ସୃଷ୍ଟି କରିଥିଲା । (୪) ଏହିଭଳି ଗୋଟିକ ପରେ ଗୋଟିଏ ଆଘାତ ସହି ଓଡ଼ିଆ ଭାଷା ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି । କିନ୍ତୁ ଏ ସମସ୍ତ ଆଘାତ ସହିବା

---

୨) Selections from the Records of Bengal Govt. vol. No. XXX Written in 1853 and published in 1859. Sec. 115, P.68 Quoted in ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତ-ବଲ୍ଲଭଙ୍କ ଦାନ— ଡକ୍ଟର ନଟବର ସାମନ୍ତରାୟ; ପୃ. ୯-୧୦ ।

୩) ଉତ୍କଳଦୀପିକା ୪ର୍ଥ ଭାଗ, ୧୧ ସଂଖ୍ୟା, ତା ୧୩-୩-୧୮୬୯

୪) ତତ୍ରୈବ ୫/୯—ତା ୨୬-୨-୧୮୭୦

ମଧ୍ୟରେ ଗୋଟିଏ ଘଟଣା ହେଉଛି ଯେ ଓଡ଼ିଆ ଭାଷାରେ ତାଳପତ୍ର ପୋଥିରେ ଥିବା ଲେଖାଗୁଡ଼ିକ ସେ ସମୟରେ ଲୋକଲୋଚନକୁ ଆସିପାରି ନଥିଲା କେବଳ ସେତିକ ନୁହେଁ ଏହି ପୁରାତନ ସାହିତ୍ୟର ପ୍ରକାଶନ, ଇତିହାସ ସଙ୍କଳନ ଆଦି ହୋଇ ନଥିବାରୁ ଓଡ଼ିଆ ପରି ଏକ ସମୃଦ୍ଧଶାଳୀ ସାହିତ୍ୟ ଶିକ୍ଷିତ ଲୋକଙ୍କ ପାଖରେ ପହଞ୍ଚିବା ସୁଯୋଗରୁ ବଞ୍ଚିତ ହୋଇଥିଲା । ତେଣୁ ଏହି ଅବଲୁପ୍ତ ସାହିତ୍ୟକୁ ଲୋକଲୋଚନକୁ ଆଣିବା ପାଇଁ ପ୍ରଥମେ ୧୮୭୪ ମସିହାରେ ରଙ୍ଗଲାଲ ବନ୍ଦୋପାଧ୍ୟାୟ ଉଦ୍ୟମ କରିଥିଲେ । ସେ ଓଡ଼ିଆର କେତେକ ବହିକୁ ବଂଗଳାଭାଷାରେ ମୁଦ୍ରଣ କରାଇବା ସଂଗେ ସଙ୍ଗେ ନିଜେ ମଧ୍ୟ ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ଉପରେ କେତେକ ପ୍ରବନ୍ଧ ରଚନା କରିଥିଲେ ।

ଖ୍ରୀ. ୧୮୭୭ ମସିହାରେ 'ଉତ୍କଳଦୀପିକା' ବଙ୍ଗଳାର ବିଦ୍ୟାସୁନ୍ଦର ରଚନା ସହିତ ଦୀନକୃଷ୍ଣଙ୍କ ରସକଲ୍ଲୋଳ ନାମକ ପୁସ୍ତକର ତୁଳନାତ୍ମକ ବିଚାର କରିବା ସଙ୍ଗେ ସଙ୍ଗେ ଦୀନକୃଷ୍ଣଙ୍କ ରସକଲ୍ଲୋଳକୁ ସର୍ବୋତ୍କୃଷ୍ଟ ରୂପେ ସ୍ୱୀକାର କରିଥିଲେ । କେବଳ ସେତିକ ନୁହେଁ ମୁଦ୍ରାଯନ୍ତ୍ର ଅଭାବରେ ଅନେକ ଗ୍ରନ୍ଥ ଲୋପ ହୋଇଯାଉଅଛି ବୋଲି ମଧ୍ୟ ମତବ୍ୟକ୍ତ କରିଥିଲେ । ଏପରିକି ଓଡ଼ିଶାର କବିକୁଳ କେଶରୀ ଉପେନ୍ଦ୍ର ଭଞ୍ଜ ୫୨ ଖଣ୍ଡ ଗ୍ରନ୍ଥ ରଚନା କରିଥିଲେ ମଧ୍ୟ ତନ୍ମଧ୍ୟରୁ ୨୦/୨୫ ଖଣ୍ଡରୁ ଅଧିକ ମିଳୁନଥିବା କଥା ପ୍ରକାଶ କରିଥିଲେ । (୫)

ପରେ ଓଡ଼ିଶାର ଏହି ଲୁପ୍ତ ସମ୍ପଦକୁ ଉଦ୍ଧାର କରିବା ନିମନ୍ତେ ଖ୍ରୀ. ୧୮୭୭ ମସିହାରେ ପ୍ରଥମେ ବାଲେଶ୍ୱରରେ 'ଉତ୍କଳ ଭାଷା ଉନ୍ନତି ବିଧାୟିନୀ' ନାମକ ସମାଜ ପ୍ରତିଷ୍ଠା ଲାଭକଲା । ଏହାର ମାଧ୍ୟମରେ ଓଡ଼ିଆ ଭାଷାର ଅପ୍ରକାଶିତ ପୋଥିର କ୍ରମଶଃ ସମ୍ପାଦନ ଓ ପ୍ରକାଶନ ନିମନ୍ତେ **'D, P Das & Co'** ନାମକ ସଂସ୍ଥା ମଧ୍ୟ ଗଠନ କରାଗଲା । (୬) ଏବଂ ୧୮୭୭ ମସିହାରେ 'କଟକ ପ୍ରିଣ୍ଟିଂ କମ୍ପାନୀ' ପ୍ରତିଷ୍ଠା କରାଯାଇ ତାହାର

---

୫) ତତ୍ରୈବ ୧/୧୨—ତା ୨୦-୧୦-୧୮୭୭

୬) ତତ୍ରୈବ ୧/୧୩—ତା ୩-୧୧-୧୮୭୭

ମାଧ୍ୟମରେ ଓଡ଼ିଆ ଭାଷାର ପୁରାତନ କାବ୍ୟ କବିତାକୁ ଲୋକଲୋଚନକୁ ଆଣିବାପାଇଁ ଉଦ୍ୟମ କରାଯାଇଥିଲା ।

ଏହାର କିଛିଦିନ ପରେ ଅର୍ଥାତ୍ ୧୮୬୭ ମସିହା ଜୁଲାଇ ମାସ ୧୯ ତାରିଖରେ ବାବୁ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ସଭାପତିତ୍ୱରେ କଟକ ସହରରେ ଓଡ଼ିଆ ଭାଷାର ପୁନରୁତ୍‌ଥାନ ନିମନ୍ତେ ଗୋଟିଏ ସଭା ଅନୁଷ୍ଠିତ ହୋଇଥିଲା । ଏହିଥିରୁ 'ଉତ୍କଳ ଭାଷା ଉଦ୍ଦୀପନ ସଭା' ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିଉଠିଥିଲା, ଯାହାର ଉଦ୍ଦେଶ୍ୟସାଧନ ନିମନ୍ତେ ତା୨୮.୫.୧୮୬୭ ମସିହାରେ ଏକ କାର୍ଯ୍ୟସୂଚୀ ପ୍ରସ୍ତୁତ କରାଯାଇଥିଲା । ଏହି କାର୍ଯ୍ୟସୂଚୀ ଅନୁଯାୟୀ ପ୍ରାଚୀନ ପୁସ୍ତକର ଏକ ତାଲିକା, ଗ୍ରନ୍ଥକର୍ତ୍ତାଙ୍କ ନାମ, ଯେଉଁ ବିଷୟ କି ଚରିତ୍ର ତହିଁରେ ଲେଖାଅଛି ଏବଂ ଗ୍ରନ୍ଥକର୍ତ୍ତାଙ୍କ ଜୀବନ ବୃତ୍ତାନ୍ତ ସମ୍ପର୍କରେ ଯାହା ଜଣାଯାଇଛି ତାହା ଉଲ୍ଲେଖ କରିବା ନିମନ୍ତେ ପଣ୍ଡିତ ଆର୍ତ୍ତତ୍ରାଣ ତର୍କ ପଞ୍ଚାନନ, କପିଳେଶ୍ୱର ବିଦ୍ୟାଭୂଷଣ, ବାବୁ ବନମାଳୀ-ସିଂହ, ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଓ ଗୌରୀଶଙ୍କର ରାୟଙ୍କୁ ସଭ୍ୟରୂପେ ମନୋନୀତ କରାଗଲା । କେବଳ ସେତିକି ନୁହେଁ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ନିମନ୍ତେ ବୈଦେହୀଶବିଳାସ, ସୁଭଦ୍ରା ପରିଣୟ ଓ ଭାଷାଭାଗବତରୁ ଅଂଶ ବିଶେଷ ନେଇ ଏକ ପାଠ୍ୟପୁସ୍ତକ ରଚନା କରିବା ନିମନ୍ତେ ଆୟୋଜନ କରାଯାଇଥିଲା । (୭) ୧୮୬୮ ମସିହାରେ ଫକୀରମୋହନ ସେନାପତିଙ୍କ ଉଦ୍ୟମରେ 'ପି. ଏମ୍. ସେନାପତି ଆଣ୍ଡ କୋ ଉତ୍କଳ ପ୍ରେସ୍' (୮) ସ୍ଥାପନ କରାଯାଇ ତାର ମାଧ୍ୟମରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରକାଶ ନିମନ୍ତେ ଉଦ୍ୟମ ହୋଇଥିଲା । ଏହି ମୁଦ୍ରଣାଳୟରୁ ପ୍ରଥମେ "ରସକଲ୍ଲୋଳ" ଗ୍ରନ୍ଥ ପ୍ରକାଶ ନିମନ୍ତେ ସମସ୍ତ ଆୟୋଜନ କରାଯାଇଥିଲେ ମଧ୍ୟ ତାହା ବିଶେଷ ଫଳପ୍ରଦ ହୋଇପାରି ନଥିଲା ।

---

୭) ତତ୍ରୈବ ୨/୩୨—ତା ୧୦-୮-୧୮୬୭

୮) ଉତ୍କଳ ସାହିତ୍ୟ ୨୨/୧୨—ପୃ. ୫୫୭ [ଫକୀରମୋହନଙ୍କ ଆତ୍ମଜୀବନୀ]
*Quoted in* ଫକୀରମୋହନ ଗ୍ରନ୍ଥାବଳୀ [୧ମ ଭାଗ] କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, ୧୯୬୩, ପୃ. ୪୬ ।

ଖ୍ରୀ. ୧୮୭୦ ମସିହା ପୂର୍ବରୁ ଓଡ଼ିଆ ଭାଷାର କୃଷ୍ଣସିଂହ ମହାଭାରତ, ବିଚିତ୍ର ରାମାୟଣ ଓ ମଥୁରାମଙ୍ଗଳ ଗ୍ରନ୍ଥ ପ୍ରକାଶିତ ହୋଇଥିବାର ସୂଚନା ଉତ୍କଳଦୀପିକା ବିଜ୍ଞାପନରୁ ମିଳେ । କେବଳ ସେତିକି ନୁହେଁ ଖ୍ରୀ. ୧୮୭୦ରୁ ଖ୍ରୀ. ୧୮୮୦ ମସିହା ମଧ୍ୟରେ ସୁବର୍ଣ୍ଣରେଖା, ଲାବଣ୍ୟବତୀ, ରସକଲ୍ଲୋଳ, ପାହାନ୍ତ ଅବକାଶ, ରାସପଞ୍ଚାଧ୍ୟାୟୀ, ଆର୍ତ୍ତତ୍ରାଣଚଉତିଶା, ଓଡ଼ିଆ ଶ୍ରୀମଦ୍ ଭାଗବତ, ରସକଲ୍ଲୋଳ, ପ୍ରେମସୁଧାନିଧି, ଲାବଣ୍ୟବତୀ, ବୈଦେହୀଶ ବିଳାସ, ଭଞ୍ଜଙ୍କ ଦଶପୋଇ, ସୁଭଦ୍ରାପରିଣୟ, ବୈଦେହୀଶ ବିଳାସ (୨ୟ ଖଣ୍ଡ), ଭାଗବତ (୧୦ମ ସ୍କନ୍ଧ), କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ହନୁମନ୍ତ ଚଉତିଶା, ଉଦ୍ଧବ ଚଉତିଶା, କୋଳାହଳ ଚଉତିଶା, କୌଶଲ୍ୟାରୋଦନ ଚଉତିଶା, ରସତରଙ୍ଗ, କମଳାକାନ୍ତ ବୋଲି, ନାବକେଳି, ଧ୍ରୁବସ୍ତୁତି, ମହାଭାରତ, ରାମାୟଣ, ବୃହତ୍ ପାଷାଣ୍ଡ ଦଳନ, ବତିଶ ସିଂହାସନ, ପ୍ରଭାତ ଅବକାଶ, ଲକ୍ଷ୍ମୀପୁରାଣ, ଦାର୍ଢ୍ୟତାଭକ୍ତି ଆଦି ଗ୍ରନ୍ଥ ପ୍ରକାଶିତ ହେବାଦ୍ୱାରା ଓଡ଼ିଆ ସାହିତ୍ୟର ବହୁ ଉପକାର ସାଧିତ ହୋଇଥିଲା । ଏହିସବୁ ପୁସ୍ତକ ପ୍ରକାଶନ ସମ୍ପର୍କରେ ତତ୍କାଳୀନ ବିଭିନ୍ନ ପତ୍ର ପତ୍ରିକାରୁ ସୂଚନା ମିଳେ ।

ଖ୍ରୀ. ୧୮୮୦ରୁ ଖ୍ରୀ. ୧୮୯୦ ମସିହା ମଧ୍ୟରେ ବିଚିତ୍ରରାମାୟଣ, ବୈଦେହୀଶ ବିଳାସ (୩ୟ), ନବଗ୍ରହ ସ୍ତୋତ୍ର, ଜଗନ୍ନାଥ ଦାସଙ୍କ ଭାଗବତ ସାର, ସଟୀକ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ୟାରି ଅଟ ପ୍ରେସ୍ ଦ୍ୱାରା ପ୍ରକାଶିତ ଭାଗବତ (୫ମ ସ୍କନ୍ଧ ପର୍ଯ୍ୟନ୍ତ), ଦାର୍ଢ୍ୟତା ଭକ୍ତି (୧ମ), କାର୍ତ୍ତିକ ମାହାତ୍ମ୍ୟ ଆରତବାଣ୍ଟ, ବିଚିତ୍ର ଭାଗବତ (୧୧ଶ), କଳାକଉତୁକ, ସ୍ନାନଉତ୍ସବ ଚଉତିଶା, ମଧୁର ଚନ୍ଦ୍ରିକା, ଟୀକାଭାଗବତ, ସୁବର୍ଣ୍ଣରେଖା ଆଦି ପ୍ରକାଶ ଲାଭ କରିଥିବାର ବିଜ୍ଞାପନ ବିଭିନ୍ନ ପତ୍ର ପତ୍ରିକାରେ ଦେଖିବାକୁ ମିଳେ ।

ଏହାପରେ ଖ୍ରୀ. ୧୮୭୨ରେ ଆଲୋଚକ ଜନ୍ ବିମ୍ସ୍ ଦୀନକୃଷ୍ଣଦାସଙ୍କ ସାହିତ୍ୟର ସମାଲୋଚନା କରିବା ସମୟରେ ୮୨ ଗୋଟି ପ୍ରାଚୀନ ଓଡ଼ିଆ ପୁସ୍ତକର ନାମୋଲ୍ଲେଖ କରିବା ସଙ୍ଗେ ସଙ୍ଗେ ଏସ ସାହିତ୍ୟ ଉପରେ ସଂକ୍ଷିପ୍ତ ଧାରଣା ପ୍ରଦାନ କରିଥିଲେ । (୯) କିନ୍ତୁ ହଣ୍ଟରର ସାହେବ ବିରଚିତ ଓଡ଼ିଶା

---

୯) *Indian Antiquary, vol. I. 1872 (Article-The Indigenous Literature of Orissa by John Beams) P. 80.*

ଇତିହାସ ଗ୍ରନ୍ଥରେ କେତେଜଣ କବି ଓ ସେମାନଙ୍କ କୃତିର ସାମାନ୍ୟ ପରିଚୟ ପ୍ରଦାନ କରିବାକୁ ପଶ୍ଚାତ୍ପଦ ହୋଇନଥିଲେ । (୧୦) ଏହା ଯେ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ ନିମନ୍ତେ ପରବର୍ତ୍ତୀ ସମୟରେ କେବଳ ସାହାଯ୍ୟ କରିଥିଲା ତାହା ନୁହେଁ ଓଡ଼ିଆ ସାହିତ୍ୟର ଏହି ଲୁପ୍ତରତ୍ନକୁ ଉଦ୍ଧାର କରିବା ନିମନ୍ତେ ମଧ୍ୟ ପ୍ରେରଣା ପ୍ରଦାନ କରିଥିଲା ।

ଓଡ଼ିଶାରେ ମୁଦ୍ରଣାଳୟ କ୍ରମଶଃ ପ୍ରସାର ଲାଭକରିବା ପରେ କପିଳେଶ୍ୱର ବିଦ୍ୟାଭୂଷଣ ସ୍ୱରଚିତ 'ରାମବିଳାସ' କାବ୍ୟକୁ ସରଳ ଭାଷାରେ ୧୮୭୫ ମସିହାରେ ପ୍ରକାଶ କରାଇଥିଲେ । (୧୧) ଖ୍ରୀ. ୧୮୭୭ ମସିହାରେ ବାବୁ ବୈଦ୍ୟନାଥ ପଣ୍ଡିତ ରାୟବାହାଦୂରଙ୍କ ସଭାପତିତ୍ୱରେ 'ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧରଣ କମ୍ପାନୀ' ଗଠନ କରାଯାଇଥିଲା । (୧୨) ଏହି କମ୍ପାନୀର ମୂଳାଧାର ଥିଲେ କାଳୀପଦ ବାନାର୍ଜି ଏବଂ ମୁଖ୍ୟ ସହାୟକ ଥିଲେ ଷ୍ଟାମ୍ସ ସାହେବ । ଏହି କମ୍ପାନୀର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓଡ଼ିଆ ଭାଷାର ତାଳପତ୍ରରେ ଥିବା ସମସ୍ତ ପ୍ରାଚୀନ ଗ୍ରନ୍ଥକୁ ମୁଦ୍ରଣ କରି ବିକ୍ରୟ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ପୁସ୍ତକ ମଧ୍ୟ ମୁଦ୍ରଣ କରିବା । (୧୩)

ଓଡ଼ିଆ ସାହିତ୍ୟର ଅପ୍ରକାଶିତ ଗ୍ରନ୍ଥରାଜିର ପ୍ରକାଶନ ନିମନ୍ତେ ଏଭଳି ଉଦ୍ୟମ ହୋଇଥିଲେ ମଧ୍ୟ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରୁ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରବଳ ପ୍ରଚେଷ୍ଟାରେ ଓଡ଼ିଆ ସାହିତ୍ୟର ଲୁପ୍ତଗ୍ରନ୍ଥର ସଂଗ୍ରହ ତଥା ବିଧିବଦ୍ଧ ସଂପାଦନା କାର୍ଯ୍ୟ ସୁସଂଗଠିତ ଭାବରେ ଆରମ୍ଭ ହୋଇଥିଲା । ଏଥିନିମନ୍ତେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି କେତେକ ଉତ୍ସାହୀ ସହକର୍ମୀଙ୍କ ସହଯୋଗରେ ଖ୍ରୀ. ୧୯୨୪ ମସିହାରେ 'ପ୍ରାଚୀ ସମିତି' ନାମକ ଏକ ଅନୁଷ୍ଠାନ ଗଠନ କରି ତାହାର ମାଧ୍ୟମରେ କେତେକ ଗ୍ରନ୍ଥ ସଂପାଦନା କରିବା ସଙ୍ଗେ ସଙ୍ଗେ ପ୍ରକାଶ କରାଇଥିଲେ ।

---

୧୦) *Orissa (vol-II) by W. Hunter, 1872, Appendix IX*
୧୧) ଉତ୍କଳଦୀପିକା ୧୦/୪—ତା ୨୩-୧-୧୮୭୫
୧୨) ସମ୍ବାଦବାହିକା —ତା ୧-୫-୧୮୭୭
୧୩) ଉତ୍କଳଦୀପିକା ୧୨/୧୧—ତା ୨୭-୫-୧୮୭୭

ଖ୍ରୀ. ୧୯୨୫ ମସିହାରେ ପ୍ରଥମେ ତାଙ୍କଦ୍ୱାରା ସମ୍ପାଦିତ ହୋଇ ବିଦଗ୍ଧ ଚିନ୍ତାମଣି [୧ମ ଭାଗ], ରହସ୍ୟ ମଞ୍ଜରୀ, ସ୍ତୁତିଚିନ୍ତାମଣି, ବ୍ରହ୍ମ-ନିରୂପଣ ଗୀତା, ୧୯୨୬ ମସିହାରେ ଭୀମଭୋଇଙ୍କ ଭଜନମାଳା [୧ମ ଶତକ] ବ୍ରହ୍ମକଲ୍ଲୋଳ ଓ ଅଣାକାର ସଂହିତା, ୧୯୨୭ ମସିହାରେ ଭୀମ ଭୋଇଙ୍କ ଭଜନମାଳା [୨ୟ ଶତକ], ନିର୍ଗୁଣ ମାହାତ୍ମ୍ୟ, ରସକଲ୍ଲୋଳ, ବୃହନ୍ନାରଦୀୟ ପୁରାଣ, ବସ୍ତୁଗର୍ଭ ପୁରାଣ ଆଦି ଆତ୍ମପ୍ରକାଶ କରିଥିଲା । ସେହି ୧୯୨୭ ମସିହାରେ କୈଳାସ ଚନ୍ଦ୍ର ମହାପାତ୍ରଙ୍କ ସମ୍ପାଦନାରେ ପୂର୍ଣ୍ଣତମ ଚନ୍ଦ୍ରୋଦୟ, ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ସମ୍ପାଦନାରେ ପ୍ରେମପଞ୍ଚାମୃତ ପ୍ରକାଶ ପାଇଥିଲା । ଖ୍ରୀ. ୧୯୨୮ ମସିହାରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ମଥୁରାମଙ୍ଗଳ, ୧୯୨୯ ମସିହାରେ ପରଚଗୀତା, ଶିବ ସ୍ୱରୋଦୟ, ପ୍ରେମଭକ୍ତି ବ୍ରହ୍ମଗୀତା, ଗୁରୁଭକ୍ତି ଗୀତା [୨ୟ ଭାଗ], ରସବାରିଧି, ଉଷାଭିଳାଷ, ନଳଚରିତ, ଶଶିସେଣା, ଗୋପୀ ଭାଷା, ୧୯୩୦ ମସିହାରେ ରୁକ୍ମଣୀବିଭା, ବଟ ଅବକାଶ ଆଦି ସମ୍ପାଦିତ ହୋଇ ପାଠକ ସମାଜ ପାଖରେ ପହଞ୍ଚିପାରିଥିଲା । ସେହି ୧୯୩୦ ମସିହାରେ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ଦ୍ୱାରା ସମ୍ପାଦିତ ହୋଇ ଗୁରୁଭକ୍ତି ଗୀତା [୧ମ ଭାଗ], ୧୯୩୧ ମସିହାରେ ଜୟକୃଷ୍ଣ ଭଜନ, ଚଉତିଶା ମଧୁଚନ୍ଦ୍ର [୧ମରୁ ୪ର୍ଥ ଭାଗ ପର୍ଯ୍ୟନ୍ତ], ଘନଶ୍ୟାମ ଦାସଙ୍କ ଦ୍ୱାରା ମହିମାଧର୍ମ ସମ୍ପର୍କିତ ଆଲୋଚନାଗ୍ରନ୍ଥ ମହିମାଧର୍ମ ପ୍ରତିପାଦକ [୧ମ ଓ ୨ୟ ଭାଗ], ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ରାମବିଭା, ଜଗମୋହନଛାନ୍ଦ ଆଦି ଗ୍ରନ୍ଥ ପ୍ରକାଶ ପାଇଥିଲା । ୧୯୩୨ ମସିହାରେ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ସାଧୁଗୀତି, ଖାଡ଼ଙ୍ଗା ଭାଗବତ [୧୧ ସ୍କନ୍ଧ], ଡଃ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ, ଶ୍ରୁତି ନିଷେଧ ଗୀତା ସମ୍ପାଦନା କରିଥିଲେ ।

୧୯୩୩ ମସିହାରେ ପ୍ରାଚୀ ସମିତି ଆନୁକୂଲ୍ୟରେ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଚଉତିଶା ମଧୁଚନ୍ଦ୍ରର [୫ମ ଭାଗ], ଶଶିରେଖା, ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ବିଦଗ୍ଧ ଚିନ୍ତାମଣି [୨ୟଭାଗ], ୧୯୩୪ ମସିହାରେ ଗୁରୁଭକ୍ତି ଗୀତା [୩ୟ ଭାଗ], ଡଃ କରୁଣାକର କରଙ୍କ ଦ୍ୱାରା ନାରାୟଣ ଶତକ, ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ୧୯୪୦ ମସିହାରେ ମାଦଳାପାଞ୍ଜି, ୧୯୪୨ ମସିହାରେ ବିଦଗ୍ଧ ଚିନ୍ତାମଣି [୩ୟରୁ ୫ମ ଭାଗ], ଲାବଣ୍ୟବତୀ [ଦୁଇଭାଗ],

୧୯୯୭ରେ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ଚଣ୍ଡୀର ବିନୋଦ ଆଦି ଗ୍ରନ୍ଥ ସମ୍ପାଦିତ ତଥା ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧଶାଳୀ କରିଥିଲା ।

ସ୍ୱାଧୀନତା ପୂର୍ବରୁ ପ୍ରାଚୀ ସମିତିର କର୍ମୀବୃନ୍ଦ ସମ୍ପାଦନା କାର୍ଯ୍ୟରେ ନିଜକୁ ଯେଉଁଭଳି ଭାବେ ନିୟୋଗ କରି ପାରୁଥିଲେ ସ୍ୱାଧୀନତା ପରେ ସେଉଳି କରିପାରି ନଥିଲେ । ଫଳରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂଗୃହୀତ ହୋଇ ୧୯୪୮ ମସିହାରେ ଗ୍ରାମଭୋଇଙ୍କ ଚଉତିଶା ମଧୁଚନ୍ଦ୍ର ଓ ୧୯୫୩ ମସିହାରେ ଚୈତନ୍ୟ ଭାଗବତ ଆତ୍ମପ୍ରକାଶ କଲା । ପ୍ରାଚୀ ସମିତି ଦ୍ୱାରା ଯେଉଁ ଗ୍ରନ୍ଥଗୁଡ଼ିକ ସମ୍ପାଦିତ ହୋଇଥିଲା ତନ୍ମଧ୍ୟରୁ ସର୍ବୋଚ୍ଚ ୩୭ ଗୋଟି ଗ୍ରନ୍ଥର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ।

ଭାରତ ସ୍ୱାଧୀନତା ଲାଭ କରିବା ପରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରାଚୀ ସମିତି ବ୍ୟତୀତ ଅନ୍ୟ ଯେଉଁ କେତୋଟି ଅନୁଷ୍ଠାନ ଓଡ଼ିଆ ଗ୍ରନ୍ଥ ସମ୍ପାଦନା ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି ସେମାନଙ୍କ ମଧ୍ୟରେ ଓଡ଼ିଶା ସାହିତ୍ୟ ଏକାଡେମୀ, ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶାରେ ଥିବା ବିଭିନ୍ନ ବିଶ୍ୱବିଦ୍ୟାଳୟ ଆଦି ଅନ୍ୟତମ ।

କେବଳ ଅନୁଷ୍ଠାନ ନୁହେଁ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଯେଉଁ କେତେକ ବରେଣ୍ୟ ଗବେଷକ ତଥା ସମ୍ପାଦକ ଓଡ଼ିଆ ସାହିତ୍ୟର ଅପ୍ରକାଶିତ କାବ୍ୟ କବିତାର ସମ୍ପାଦନା ନିମନ୍ତେ ନିଜକୁ ନିୟୋଜିତ କରିଥିଲେ ବା କରୁଛନ୍ତି ସେମାନଙ୍କ ମଧ୍ୟରେ ଡଃ କରୁଣାକର କର, କେଦାର ନାଥ ମହାପାତ୍ର, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ସୁଧାକର ପଟ୍ଟନାୟକ, ଗୌରୀ କୁମାର ବ୍ରହ୍ମା, ଡଃ ସତ୍ୟନାରାୟଣ ରାଜଗୁରୁ, ଡଃ ପ୍ରହଲ୍ଲାଦ ପ୍ରଧାନ, ଡଃ କୃଷ୍ଣଚରଣ ସାହୁ, ଡଃ ବାସୁଦେବ ସାହୁ, ପଣ୍ଡିତ ନୀଳମଣି ମିଶ୍ର, ଡଃ ରଘୁନାଥ ମହାପାତ୍ର, ଡଃ ଭଗବାନ ପଣ୍ଡା, ଡଃ ଜାନକୀ ବଲ୍ଲଭ ମହାନ୍ତି, ଡଃ ଆଶୁତୋଷ ପଟ୍ଟନାୟକ, ଡଃ ଦୁଃଖିଶ୍ୟାମ ପଟ୍ଟନାୟକ, ଶ୍ରୀମତୀ ପ୍ରମିଳା ମିଶ୍ର ଓ ଡଃ ବୈଷ୍ଣବ ଚରଣ ସାମଲ ଆଦି ଅନ୍ୟତମ ।

ଉପରୋକ୍ତ ସଂପାଦନାକାର୍ଯ୍ୟ ମଧ୍ୟରୁ ସ୍ୱଳ୍ପ ସଂଖ୍ୟକ ବୈଜ୍ଞାନିକ ପଦ୍ଧତିର ଅନୁସରଣ କରିଥିବା ପରି ମନେ ହୁଏ । ପାଠାନ୍ତର ଦେଲେ ଗ୍ରନ୍ଥର କଳେବର ବୃଦ୍ଧି ହେବା ଆଶଙ୍କାରେ ଅଧିକାଂଶ ବୈଜ୍ଞାନିକ ପଦ୍ଧତିକୁ ଅନୁସରଣ କରିନାହାନ୍ତି । କେତେକ ସଂପାଦକ ନିଜେ ବା କୌଣସି ପ୍ରକାଶକଙ୍କ ଦ୍ୱାରା ସଂପାଦିତ ଗ୍ରନ୍ଥଟିକୁ ମୁଦ୍ରଣ କରାଉଥିବାରୁ ଉକ୍ତ ଗ୍ରନ୍ଥ-ଗୁଡ଼ିକରେ ଏହି ପ୍ରମାଦ ଦେଖିବାକୁ ମିଳେ । କିନ୍ତୁ ଯେଉଁ ଗ୍ରନ୍ଥଗୁଡ଼ିକ କୌଣସି ଅନୁଷ୍ଠାନ ବା ସରକାରଙ୍କ ସହାୟତାରେ ମୁଦ୍ରିତ ହେଉଛି ତାହା ମଧ୍ୟ ଏହି ଦୋଷମୁକ୍ତ ନୁହେଁ ବୋଲି କହିଲେ ଚଳେ । କାରଣ କେତେକ ସ୍ଥଳରେ ସଂପାଦକଙ୍କର ଅଜ୍ଞତା ବା ପାଠାଲୋଚନା ସଂପର୍କରେ ସ୍ୱଳ୍ପଜ୍ଞାନ ହେତୁ ସେମାନେ ଏହି ଅସୁବିଧାର ସମ୍ମୁଖୀନ ହୁଅନ୍ତି । ତେଣୁ ସେମାନେ ଉପଯୁକ୍ତ ଶୁଦ୍ଧ ପାଠକୁ ପାଠାନ୍ତରରେ ଦେଇ ଖରାପ ପାଠକୁ ପାଠ ମଧ୍ୟରେ ଦେଇଥିବାର ଦେଖିବାକୁ ମିଳେ । ଏତଦ୍ ବ୍ୟତୀତ ସଂପାଦନା ଗ୍ରନ୍ଥରେ ଅନେକ ବର୍ଣ୍ଣାଶୁଦ୍ଧି ମଧ୍ୟ ଦେଖିବାକୁ ମିଳୁଛି । ଏହାର କାରଣ ରୂପେ ସଂପାଦକଙ୍କର ଅଜ୍ଞତା କିମ୍ବା ମୁଦ୍ରାକରର ଅସାବଧାନତା ଦାୟୀ ତାହା ନିର୍ଦ୍ଦିଷ୍ଟଭାବେ ନିର୍ଦ୍ଧାରଣ କରିବା କଷ୍ଟକର । ପୁନଶ୍ଚ କେତେକ ସଂପାଦକ ଗୋଟିଏ ମାତ୍ର ପୋଥିକୁ ସଂପାଦନା ନିମନ୍ତେ ଗ୍ରହଣ କରି ପାଠ ମଧ୍ୟରେ ବନ୍ଧନୀ ଚିହ୍ନରେ ଶବ୍ଦ ରଖି ପଦପୂରଣ କରୁଥିବାର ମଧ୍ୟ ପରିଲକ୍ଷିତ ହୁଏ । ଏହା ସଂପାଦନା ଦୃଷ୍ଟିରୁ ଅତ୍ୟନ୍ତ ଗର୍ହିତ କାମ । ଏପରିକି କେତେକ ସଂପାଦକ ସଂପାଦିତ ପୁସ୍ତକରେ ପାଠାଲୋଚନା ନ କରି ଗୋଟିଏ ସ୍ୱଳ୍ପ କିମ୍ବା ଦୀର୍ଘ ପୃଷ୍ଠା ବିଶିଷ୍ଟ ମୁଖବନ୍ଧଟିଏ ଦେଇ ନିଜର ବିଦ୍ ବତ୍ତାର ପରିଚୟ ଦେବାକୁ ଆଗେଇ ଆସିଥିବାପରି ମନେ ହୁଏ । ତେଣୁ ଗୃହୀତ ପାଠର ମୂଲ୍ୟ ପାଠକ ନିକଟରେ ଉଦ୍ଦେଶ୍ୟହୀନ ଭାବରେ ପଡ଼ିଅଛି । ଯଦି ସଂପାଦନାର ବିଧି ଓ ପାଠାଲୋଚନାର ମାର୍ଗକୁ ସୁଚାରୁ ରୂପେ ଗ୍ରହଣ କରି ସଂପାଦନା କାର୍ଯ୍ୟ କରାଯାଏ ତେବେ ତାହା ବିଶେଷ ମୂଲ୍ୟବାନ ହେବା ସଙ୍ଗେ ସଙ୍ଗେ ସମ୍ଭାବ୍ୟ ପାଠ ନିର୍ଦ୍ଧାରଣ ସହିତ ଗ୍ରନ୍ଥକର୍ତ୍ତାର ଅଭିଷ୍ଟ ପୂରଣ ନିମନ୍ତେ ସହାୟକ ହୋଇପାରିବ ।

---

# ପରିଶିଷ୍ଟ

## (କ) ପାଣ୍ଡୁଲିପିର ବିବରଣାତ୍ମକ ସୂଚୀ (ନମୁନା)

୧] ଗ୍ରନ୍ଥର ନାମ—
୨] ରଚନା କାଳ—
୩] ନକଲ ସମୟ—
୪] ରଚୟିତାଙ୍କ ନାମ—
୫] ରଚୟିତାଙ୍କ ଆଶ୍ରୟଦାତା—
୬] ଆଶ୍ରୟ ଦାତାଙ୍କ ବଂଶ ପରିଚୟ—
୭] ରଚୟିତାଙ୍କ ବଂଶ ପରିଚୟ—
୮] ଗ୍ରନ୍ଥର ପତ୍ର (ପୃଷ୍ଠା) ସଂଖ୍ୟା—
୯] ପ୍ରତି ପତ୍ରର ଧାଡ଼ି (ପଙ୍କ୍ତି) ସଂଖ୍ୟା—
୧୦] ପ୍ରତି ପଙ୍କ୍ତିର ଅକ୍ଷର ସଂଖ୍ୟା—
୧୧] ପତ୍ରର ଆକାର (ଦୈର୍ଘ୍ୟ ଓ ପ୍ରସ୍ଥ)—
୧୨] ପତ୍ରର ପ୍ରକାର (ତାଳପତ୍ର/ଭୂର୍ଜପତ୍ର/କାଗଜ)—
୧୩] ଗ୍ରନ୍ଥର ଭାଷା—
୧୪] ଗ୍ରନ୍ଥର ଲିପି—
୧୫] ଗ୍ରନ୍ଥରେ ପ୍ରୟୋଗ କରାଯାଇଥିବା ଛନ୍ଦ—
୧୬] ଗ୍ରନ୍ଥର ଅବସ୍ଥା—
୧୭] ପ୍ରାପ୍ତି ସ୍ଥାନ (ଠିକଣା ସହ)—
(ସଂଗ୍ରହାଳୟ ହୋଇଥିଲେ ତା'ର କ୍ରମିକ ସଂଖ୍ୟା ଇତ୍ୟାଦି)

୧୮] ଗ୍ରନ୍ଥୋକ୍ତ ବିଷୟର ସଂକ୍ଷିପ୍ତ ସୂଚନା—

୧୯] ଗ୍ରନ୍ଥର ଆରମ୍ଭ ଅଂଶ—

୨୦] ଗ୍ରନ୍ଥର ମଧ୍ୟ ଅଂଶ—

୨୧] ଗ୍ରନ୍ଥର ଶେଷ ଅଂଶ ବା ପୁଷ୍ପିକା ଆଦି—

୨୨] ନକଲକାରର ନାମ ଓ ପରିଚୟ ଆଦି –

୨୩] ଗ୍ରନ୍ଥ ସମ୍ପର୍କିତ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟ—
(ଉକ୍ତ ପୋଥିରେ ଥିବା ଅନ୍ୟାନ୍ୟ ପୋଥି ବିଷୟରେ ମଧ୍ୟ ଏଠାରେ ସୂଚନା ଦିଆଯିବ ।)

୨୪] ବିବରଣ ନେବାକାରୀଙ୍କ ନାମ—

୨୫] ବିବରଣ ନେବା ଦିନ—



# ସହାୟକ ଗ୍ରନ୍ଥସୂଚୀ


ENGLISH:—

A Companion to Latin Studies
by J. P. Postgate,
Cambridge : 1913,

Companion to Classical texts
by F. W. Hall
Oxford : 1913

Dictionary of Greek & Roman
Biography and Mythology
Ed. by W. Smith.

The Mahabharat (vol I, Adiparvan)
Ed. by. V. S. Sukthankar
Poona : 1933

The Pancharatra Reconstructed
by Franklin Edgerton,
U. S. A. : 1929

ଓଡ଼ିଆ:—

ଆଲୋଚନା—ଶ୍ରୀ ମାଳମଣି ମିଶ୍ର
କଟକ : ୧୯୭୬

ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ—
ଡଃ ନଟବର ସାମନ୍ତରାୟ
ଭୁବନେଶ୍ୱର : X

ଚଣ୍ଡିପୁରାଣ—ସଂପାଦନା ଡଃ କୃଷ୍ଣଚରଣ ସାହୁ
କଟକ : ୧୯୮୪ .

ଜଗମୋହନ ରାମାୟଣ (ଆଦିକାଣ୍ଡ)—
ସଂପାଦନା ଡଃ କୃଷ୍ଣଚରଣ ସାହୁ
କଟକ : ୧୯୮୦

ପ୍ରାଚୀନପୋଥି ଶୁଦ୍ଧ ସଂପାଦନାପଦ୍ଧତି ଓ ଅନୁବାଦ କୌଶଳ—
ଡଃ ଆଶୁତୋଷ ପଟ୍ଟନାୟକ
ଭୁବନେଶ୍ୱର : ୧୯୮୮

ସାହିତ୍ୟ ବୀକ୍ଷା—ଶ୍ରୀ ଦେବୀ ପ୍ରସନ୍ନ ପଟ୍ଟନାୟକ
କଟକ : ୧୯୬୫

ହିନ୍ଦୀ:—

ପାଣ୍ଡୁଲିପି ବିଜ୍ଞାନ—ଡଃ ସତ୍ୟେନ୍ଦ୍ର
ଜୟପୁର : ୧୯୭୮

ପାଣ୍ଡୁଲିପି ସଂପାଦନା କଳା—
ଡଃ ରାମ ଗୋପାଳ ଶର୍ମା ଦିନେଶ
ଦିଲ୍ଲୀ : ୧୯୭୯

ଭାରତୀୟ ପାଠାଲୋଚନାକୀ ଭୂମିକା –
ଅନୁ. ଡଃ ଉଦୟନାରାୟଣ ତିୱାରୀ
ଦିଲ୍ଲୀ : ୧୯୭୧

ଭାରତୀୟ ସାହିତ୍ୟ—
ପଣ୍ଡିତ ଉଦୟ ଶଙ୍କର ଶାସ୍ତ୍ରୀ
୧୯୫୯

ଶୋଧ ପ୍ରବନ୍ଧ ଔର ପ୍ରକ୍ରିୟା –
ଡଃ ଚନ୍ଦ୍ରଭାନ ରାବତ
ମଥୁରା : ୧୯୭୯

